ବିଶ୍ୱନାଥ ପାଠାଗାର ଉଦ୍‌ଘାଟନ ଉପଲକ୍ଷେ...

# ଆମ ଗାଁ ଆମ ପରିବାର

## ବିଶ୍ୱନାଥ ରଥ



ଆବିର୍ଭାବ : ୦୭.୦୬.୧୯୪୦

ତିରୋଧାନ : ୩୦.୧୦.୨୦୧୫

# ସମ୍ପାଦକୀୟ

'ଆମ ଗାଁ , ଆମ ପରିବାର'ର ପରିସୀମା ଖୁବ୍ ବ୍ୟାପ୍ତ । ଡ଼ିଆ ଠାରୁ ଆରମ୍ଭ । କିନ୍ତୁ ଏହା ନିରାକାରପୁରଠାରୁ ବୋଲଗଡ଼ ଯାଏଁ, ଗଡ଼ଖାରଧରୁ ବାଙ୍କପୁର ଯାଏଁ, କଣାସଠାରୁ ଶଙ୍ଖତ୍ରାସ ଯାଏଁ ବା ସଂକ୍ଷିପ୍ତରେ ଓଡ଼ିଶାର ସମସ୍ତ ଗାଁକୁ ଛୁଇଁଛି । ଆମ ପରିବାର ସେହିପରି ରଥ ପରିବାରରୁ ଆରମ୍ଭ ହୋଇ ବାହିନୀପତି, ହୋତା, ଦାଶ, ମହାନ୍ତି, ପଟ୍ଟନାୟକ, ସାହୁ ଏବଂ ସେଠୀ ତଥା ପ୍ରତ୍ୟେକ ଗ୍ରାମ ପରିବାର ଏହାର ଅନ୍ତର୍ଭୁକ୍ତ ।

ମୋଟ ଉପରେ ପ୍ରତ୍ୟେକ ଗ୍ରାମ ଓ ପ୍ରତ୍ୟେକ ଗ୍ରାମ୍ୟ ପରିବାରର କାହାଣୀକୁ ଏହାର ଅନ୍ତର୍ଭୁକ୍ତ କରିବା ଆମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ପ୍ରତ୍ୟେକ ବ୍ୟକ୍ତିର ଚିନ୍ତନ, ଅନୁଭୂତି ଏବଂ ଦର୍ଶନକୁ ସ୍ଥାନିତ କରିବା ଆମର ଉଦ୍ଦେଶ୍ୟ ।

ପରବର୍ତ୍ତୀ ସଂଖ୍ୟା ମାନଙ୍କରେ ଉପଯୁକ୍ତ ଲେଖା ପାଇଲେ ତାହା ପ୍ରକାଶିତ ହେବ । ଯେକୌଣସି ବ୍ୟକ୍ତିଙ୍କର ଲେଖା, ଅଙ୍କନ, ଫଟୋଚିତ୍ର ଆଦିକୁ ଆମେ ସ୍ୱାଗତ କରିବୁ ।

ଏହି ସଂଖ୍ୟା ৺ ବିଶ୍ୱନାଥ ରଥଙ୍କ ସ୍ମୃତିରେ ଗଠିତ 'ବିଶ୍ୱନାଥ ପାଠାଗାର'ର ଶୁଭ ଉଦ୍‌ଘାଟନ ଅବସରରେ ପ୍ରକାଶିତ ହେଉଥିବାରୁ ତାଙ୍କ ସମ୍ପର୍କିତ ଲେଖାଗୁଡ଼ିକ ପ୍ରକାଶିତ ହୋଇଛି । ପାଠକ ପାଠିକାଙ୍କ ମତାମତ ପାଇଲେ ଆମେ ଖୁସୀ ହେବୁ ।

ବିନୀତ

ସଂପାଦନା ମଣ୍ଡଳୀ

# ଆଦ୍ୟ କଥା

ଆମ ଘର ଦାଣ୍ଡ ଦୁଆରର ଦୁଇପାଖ କାନ୍ଥରେ ଦୁଇଟି ଶ୍ଳୋକ ଲେଖିଥିଲେ ନନା । ପୂର୍ବ ପାଖ କାନ୍ଥରେ ଲେଖିଥିଲେ-

ସ୍ୱସ୍ତି ପ୍ରଜାଭ୍ୟଂ ପରିପାଳୟନ୍ତୁ
ନ୍ୟାୟେଣ ମାର୍ଗେଣ ମହୀ ମହିଶଃ
ଗୋ ବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତିମ୍
ଲୋକା ସମସ୍ତଃ ସୁଖୀନଃ ଭବନ୍ତୁ ।।

ସେଇଭଳି ପଶ୍ଚିମ ପଟ କାନ୍ଥରେ ଲେଖା ହୋଇଥିଲା-

ସର୍ବେ ଭବନ୍ତୁ ସୁଖୀନଃ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ
ମା କଷ୍ଚିତ ଦୁଃଖ ଭାକ୍ ଭବେତ୍ ।।

କେବଳ ପରିବାର ନୁହେଁ, ସମସ୍ତଙ୍କ ସୁଖ, ସ୍ୱାସ୍ଥ୍ୟ ଏବଂ ଶିକ୍ଷା ପାଇଁ ଏ ଚିନ୍ତନ । ଏ ଚିନ୍ତନ ଗ୍ରାମ ପାଇଁ, ଅଞ୍ଚଳ ପାଇଁ, ସମଗ୍ର ଜନସମାଜ ପାଇଁ । ଅନ୍ୟର ମଙ୍ଗଳ ହେଉ । ସେଇଥିରେ ହିଁ ଆମର ମଙ୍ଗଳ । ସେଇଥିରେ ହିଁ ଆମର ଆନନ୍ଦ !

'ଆମ ଗାଁ, ଆମ ପରିବାର' ପ୍ରକାଶନର କେବଳ ଗୋଟିଏ ଉଦ୍ଦେଶ୍ୟ ଥିଲା । କେବଳ ଡ଼ିଆ ଗ୍ରାମ ବା ରଥ ପରିବାର ବିଷୟ ଉପସ୍ଥାପନା କରିବା ନଥିଲା । ବରଂ ଗ୍ରାମର ଏବଂ ଆମ ଅଞ୍ଚଳର ବିଭିନ୍ନ ପରିବାର ବିଷୟରେ ସମସ୍ତଙ୍କୁ ଅବଗତ କରାଇବା ଏହାର ଉଦ୍ଦେଶ୍ୟ ଥିଲା । କେତେକ ବ୍ୟକ୍ତିଙ୍କୁ ଲେଖା ମଗାଯାଇଥିଲା । ତେବେ ଲେଖାଗୁଡ଼ିକ ଆମର ହସ୍ତଗତ ହେଲାନାହିଁ । ଅଗତ୍ୟା, ଏହି ରୂପରେ ପ୍ରାୟତଃ 'ରଥ ପରିବାରର କାହାଣୀ ଭାବେ ପ୍ରକାଶିତ ହୋଇଛି । ହୁଏତ ଅଧିକ ସହଯୋଗ ମିଳିଲେ ପରବର୍ତ୍ତୀ ସଂଖ୍ୟା ଅଧିକ ବ୍ୟାପକ ହୋଇପାରିବ ।

କେତେକ ସ୍ଥାନରେ ରହିଥିବା ଅନିଚ୍ଛାକୃତ ତ୍ରୁଟି ପାଇଁ କ୍ଷମା ମାଗୁଛି ।

।। **ରଥ ପରିବାର** ।।

# ଓଁ ନମଃ ଶିବାୟ

ଡ଼ଃ ରବିନାରାୟଣ ରଥ

ସ୍ୱର୍ଗପୁରୀ କଥା । ସେଦିନ ସଂଧ୍ୟା ବେଳକୁ ଶ୍ରୀଶ୍ରୀ ମହାଦେବ ତାଙ୍କ ଆସ୍ଥାନକୁ ଫେରି ଦେଖିଲେ ମା'ପାର୍ବତୀ ମୁହଁ ଶୁଖାଇ ବସିଛନ୍ତି । ମନ ଦୁଃଖର କାରଣ ଜାଣିବାପାଇଁ ଶିବ୍‌ଜୀ ଅନେକ ପ୍ରୟାସ କଲେ । ଶେଷରେ ମା'ପାର୍ବତୀଙ୍କ ମୁହଁ ଖୋଲିଲା । ସେ ନାରୀ ସୁଲଭ ଭଙ୍ଗୀରେ କହିଲେ, ''ତମେ ଖାଲି ମିଛକୁ ମହାଦେବ ! ଆଜି କୁବେରଜୀଙ୍କ ସ୍ତ୍ରୀ ତାଙ୍କ ଭବନକୁ ଡ଼ାକି ନେଇଥିଲେ । ତାଙ୍କ କୁବେର ପୁରୀରେ ଯେଉଁ ଧନସମ୍ପତ୍ତି ଭରି ରହିଛି, ତାକୁ ଦେଖିଲି । ସୁନା, ରୂପା, ହୀରା, ମୋତି, ମାଣିକ ଆଉ ଯେତେସବୁ ମୂଲ୍ୟବାନ ଆସବାବ ପତ୍ର । ସବୁ ଦେବତାଙ୍କ ଭିତରେ ମହାନ୍ ବୋଲି ତ ଆପଣ ମହାଦେବ ! ହେଲେ କାହିଁ ଆପଣଙ୍କ ଘରେ କିଛି ତ ନାହିଁ । ଦେହରେ ଶ୍ମଶାନରୁ ଗୁଡ଼ାଏ ପାଉଁଶ ବୋଲି ହୋଇଛ । ପୁଣି ବସ୍ତ୍ର ଭାବରେ... ।'' ମା' ପାର୍ବତୀଙ୍କ ଅଭିମାନଭରା କାହାଣୀ ମହାଦେବ ଶୁଣିଲା ବେଳକୁ ତାଙ୍କ ଶ୍ରୀମୁଖରେ ଏକ ମୁରୁକି ହସ ଉଦ୍ରେକ ହେଲା । ପାର୍ବତୀଙ୍କ ମୁହଁରୁ କଥା ଛଡ଼ାଇ ନେଇ ସେ କହିଲେ, ''ହଉ, ବୁଝିଲି । ବୁଝିଲି, କୁବେରଙ୍କ ବିଷୟ ସଂପତ୍ତିର ପ୍ରାଚୁର୍ଯ୍ୟ ତୁମକୁ ଚମକ୍ରୃତ କରିଛି ତ !'' ତା'ପରେ ସେ ନିଜର ତୃତୀୟ ନୟନରେ ମା' ପାର୍ବତୀଙ୍କ ଚାହିଁ କହିଲେ, ''ତୁମଠାରେ ମହାଲକ୍ଷ୍ମୀ, ମହାସରସ୍ୱତୀ, ମହାକାଳୀ ସମସ୍ତ ଶକ୍ତି ବିରାଜମାନ । ତେଣୁ ତୁମେ ମୋ କଥା ଠିକ୍ ବୁଝିପାରିବ ।'' ତା'ପରେ ନିଜ ଜଟା ମଧ୍ୟରୁ ଗୋଟିଏ ଜଟାକୁ ଛିଣ୍ଡାଇ ସେ ମା'ପାର୍ବତୀକୁ ଧରାଇ ଦେଇ କହିଲେ, ''ଦୟାକରି କାଲି ଆଉଥରେ କୁବେର ଭବନକୁ ଯାଅ, ତାଙ୍କର ସମସ୍ତ ଧନ ସମ୍ପତ୍ତିକୁ ତରାଜୁର ଗୋଟିଏ ପାଖରେ ରଖିବ, ଅନ୍ୟ ପାଖରେ ଏଇ ଜଟାଟିକୁ ରଖିବ । ତା'ପରେ ଫଳ କ'ଣ ହେଲା ମୋତେ ଜଣାଇବ ।'' ଏତକ କହି ସେ ଅବିଗଳିତ ଭାବେ ବିଶ୍ରାମ କକ୍ଷକୁ ଚାଲିଗଲେ ।

ମା'ପାର୍ବତୀ ଦେଖିଲେଯେ, ତାଙ୍କ ଅଭିମାନ ଦ୍ୱାରା ପ୍ରଭୁ ଆଦୌ ବିଗଳିତ ହେଲେନାହିଁ । ସେ ଜାଣନ୍ତି ପ୍ରଭୁ ତାଙ୍କୁ ଖୁବ୍ ଆଦର କରନ୍ତି । ସେ ଭାବିଥିଲେ ଯେ କୁବେରଙ୍କ ସମ୍ପତ୍ତି ଦେଖି ସେ ଚଳିତ ହୋଇଛନ୍ତି ଜାଣିଲେ ନିଶ୍ଚୟ ତାଙ୍କ ପାଇଁ ତା'ଠାରୁ ଅଧିକ ସମ୍ପତ୍ତିର ବ୍ୟବସ୍ଥା କରିଦେବେ । ତାଙ୍କ ଇଚ୍ଛା ମୁତାବକ କୌଣସି ଘଟଣା ନଘଟିବାରୁ ତାଙ୍କ ଅଭିମାନ ଆହୁରି ବଢ଼ିଗଲା । ସେ ଦିନ ରାତି କେବଳ କାନ୍ଦି କାନ୍ଦି ଶୋଇପଡ଼ିଲେ ।

ତହିଁ ଆରଦିନ ନିତ୍ୟକର୍ମ ସାରି ଶ୍ରୀ ମହାଦେବ, କୈଳାସ ଶିଖରକୁ ଧ୍ୟାନ କରିବା ପାଇଁ ଚାଲିଗଲେ । ତା'ପରେ ମା'ପାର୍ବତୀ ତୁରନ୍ତ କୁବେର-ଭବନ ଆଡ଼କୁ ବାହାରିପଡ଼ିଲେ । ତାଙ୍କୁ ପୁନର୍ବାର ତାଙ୍କ ଭବନରେ ଦେଖି କୁବେରଙ୍କ ସ୍ତ୍ରୀ ପାଛୋଟି ନେଇ ଆଗମନର କାରଣ ପଚାରିଲେ । ମହାଦେବ ଯେପରି ନିର୍ଦ୍ଦେଶ ଦେଇଥିଲେ, ସେ ପ୍ରକାରେ ଗୋଟିଏ ପାର୍ଶ୍ୱରେ କୁବେର ଭବନର ସମସ୍ତ ମୂଲ୍ୟବାନ ପଦାର୍ଥ ରଖାଗଲା । ଅନ୍ୟପାର୍ଶ୍ୱରେ ରଖାଗଲା ଶ୍ରୀ ଶ୍ରୀ ମହାଦେବଙ୍କ ଶିର ମଣ୍ଡନ କରିଥିବା ଜଟାରୁ ଗୋଟିଏ । ହଠାତ୍ ଆଶ୍ଚର୍ଯ୍ୟ ହେଲେ ମା'ପାର୍ବତୀ କୁବେରପୁରୀର ସମସ୍ତ ଐଶ୍ୱର୍ଯ୍ୟଠାରୁ ଶିବଙ୍କ ମସ୍ତକର ଏକ ଜଟର ଓଜନ ଅଧିକ ହେଲା । ମା'ପାର୍ବତୀ ବିମୋହିତ ହେଲେ ଶିବଜଟାର ମହତ୍ୱ ଦର୍ଶନ କରି । ଗର୍ବିତ କୁବେରଙ୍କ ସ୍ତ୍ରୀ ମଥାନତ କଲେ । ପ୍ରଣିପାତ କଲେ ଗୁରୁତ୍ୱ ପ୍ରତିପାଦନ କରିଥିବା ଶିବଜଟାଙ୍କୁ । ମା'ପାର୍ବତୀଙ୍କର ଭ୍ରମ ଦୂରହେଲା ।

ଏହି ଗଳ୍ପର ଅବତାରଣା କରିବାର ଉଦ୍ଦେଶ୍ୟ ହେଉଛି ଯେ, ଏଇଟି ଥରେ ନନା (୰ ଆନନ୍ଦ ରଥ) ମୋତେ ଶୁଣାଇଥିଲେ ମୋର ସଂଶୟ ଦୂର କରିବା ପାଇଁ ।

ପରିବାରର ଆର୍ଥିକ ଅନାଟନକୁ ସେ କେବେ ଭ୍ରୁକ୍ଷେପ କରୁନଥିଲେ । ପ୍ରଭୁ କପିଳେଶ୍ୱରଙ୍କ ନିକଟରେ ସେ ସମର୍ପିତ ଥିଲେ । ଅନେକ ସମୟରେ ସେ ଖୁବ୍ ତନ୍ମୟ ହୋଇ ଜପ କରୁଥିଲେ - "ଓଁ ନମଃ ଶିବାୟ, ଓଁ ଦାରିଦ୍ର୍ୟ ଦୁଃଖ ଦହନାୟ, ନମଃ ଶିବାୟ" । ମୋର ଯେତେବେଳେ ୧୦ମଶ୍ରେଣୀ, ମୋ ମନରେ ସନ୍ଦେହ ହେଲା । ନନାଙ୍କୁ ପ୍ରଶ୍ନ କରିଥିଲି- "ନନା ! ଦାରିଦ୍ର୍ୟର ଦୁଃଖ ଦୂର କରିବା ପାଇଁ ତ ଲକ୍ଷ୍ମୀଙ୍କୁ ଜପ କରିବା କଥା ! ଶିବ ଯିଏ ସ୍ୱୟଂ ଦାରିଦ୍ର୍ୟର ପ୍ରତୀକ, ତାଙ୍କୁ ଜପ କରିବାରମାନେ କ'ଣ ?" ତା'ପରେ ନନା ଉପରୋକ୍ତ ଗଳ୍ପଟି ଶୁଣାଇଥିଲେ । ବାସ୍ତବରେ ଅର୍ଥର ଅଭାବ ଯୋଗୁ ଦାରିଦ୍ର୍ୟ ଆସେନାହିଁ । ଆସିଥାଏ ମହନୀୟ ଚିନ୍ତନ ଅଭାବରେ ।



ଆମ ଗାଁର କେତେକ ବ୍ୟକ୍ତି ବିଶେଷଙ୍କୁ ଆଜିର ଏହି ପୂଣ୍ୟ ତିଥିରେ ରଥ ପରିବାର ସମ୍ମାନିତ କରୁଛି ।

ଡ଼କ୍ଟର ସଞ୍ଜୟ ମହାପାତ୍ର - ଅଧ୍ୟକ୍ଷ

ଶ୍ରୀ ଅମ୍ଳାନ ପ୍ରହରାଜ - (ବ୍ୟଙ୍ଗ କବି) ମିଡ଼ିଆ

ଶ୍ରୀ ନବକିଶୋର ଦାଶ - କୃଷକ, ଶ୍ରମିକ

ଶ୍ରୀ ମୃତ୍ୟୁଞ୍ଜୟ ରଥ - ଶ୍ରେଷ୍ଠ ଘୋଷକ

ଶ୍ରୀ ରାମଚନ୍ଦ୍ର ଦାଶ, କୋଲସାହି - ମିଡ଼ିଆ, ସମାଜସେବୀ

ଶ୍ରୀ ରାମଚନ୍ଦ୍ର ଦାଶ , ଡ଼ିଆ - ସହକର୍ମୀ, ଶିକ୍ଷକ

ଶ୍ରୀ ଚନ୍ଦ୍ର ପରିଡ଼ା - ସୋସିଆଲ୍ ମିଡ଼ିଆ

ଶ୍ରୀ ରାମଚନ୍ଦ୍ର ସାହୁ - କୃଷକ

ଶ୍ରୀ ନରସିଂହ ରାଉତରାୟ - କୃଷକ

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ହୋତା - ପୁରୋହିତ

ଶ୍ରୀ ଫକୀର ବାହିନୀପତି - ବୟୋଜ୍ୟେଷ୍ଠ

ଶ୍ରୀ ବିପିନ୍ ଜୟସିଂହ - ରାଜନୀତିଜ୍ଞ

ଶ୍ରୀ ଜଟୀ ଦାଶ କୋଲସାହି - ଭକ୍ତ

ଶ୍ରୀ ସୂର୍ଯ୍ୟକାନ୍ତ ମହାନ୍ତି - ସମାଜ ସେବୀ



# ମୋ ଦୃଷ୍ଟିରେ ଆମ ଗାଁ

ଶ୍ରୀମତୀ ଆଶାଲତା ମିଶ୍ର

ମୁଁ ଓଡ଼ିଆ ଗାଁର ଝିଅ । ଆମ ଗାଁ ଖୋର୍ଦ୍ଧା ଜିଲ୍ଲାର ନିରାକାରପୁର ଷ୍ଟେସନରୁ ପ୍ରାୟ ୨ କିଲୋମିଟର ଦୂର ହେବ । ଆମ ଗାଁ ଆୟତନରେ ବେଶୀ ବଡ଼ ନହେଲେ ମଧ କପିଳେଶ୍ୱର ଠାକୁରଙ୍କ ଯୋଗୁଁ ବେଶ ଜଣାଶୁଣା । ମୋର ଜନ୍ମ ପୁରୀ ସହରରେ । ସହରର ପାଣି ପବନରେ ମୁଁ ବଡ଼ ହୋଇଛି । ପିଲାଦିନେ ଗାଁ କ'ଣ ମୁଁ ଜାଣିନଥିଲି । ୪/୫ ବର୍ଷର ହେଲାପରେ ମୁଁ ବୁଝିଲି ନନା କାହିଁକି ସବୁବେଳେ ଗାଁକୁ ଯାଉଛନ୍ତି । ଧିରେ ଧିରେ ମୋର ମଧ ଗାଁକୁ ଯିବାକୁ ଆଗ୍ରହ ଆସିଲା । ଇଂରେଜ ଅମଳର କଥା ।

ସେତେବେଳେ ମୋ ଜେଜେବାପା ୰ ବନମାଳୀ ରଥ ତାଙ୍କର ଚାରି ପୁଅଙ୍କୁ ଖୋର୍ଦ୍ଧା ସ୍କୁଲରେ ପାଠ ପଢ଼ାଇଥିଲେ । ସେଥିପାଇଁ ତାଙ୍କୁ ବହୁତ କଥା ଶୁଣିବାକୁ ପଡୁଥିଲା । ଏମିତିକି ଲୋକ କହିଥିଲେ ପିଲାମାନଙ୍କୁ ବାହାରକୁ ପଠାଉଛୁ । ମଲାବେଳକୁ ପାଣି ଟୋପାଏ ଦେବାକୁ କେହିନଥିବେ । ସେ ସବୁ ଶୁଣି ସୁଦ୍ଧା ମୋ ଜେଜେବାପା ନୀରବ ରହୁଥିଲେ । ଇଏ ତ ଦେଢ଼ଶହ ବର୍ଷ ତଳର କଥା । ଯାହା ବୋଉଙ୍କ ଠାରୁ ଶୁଣିଛି ତା ଲେଖୁଛି । ସେତେବେଳେ ବୋହୂମାନେ ଶାଶୁ ଘରେ କଥା ନକହି ଠାରୁଥିଲେ । ଆମ ଘରେ କିନ୍ତୁ ସେ କଟକଣା ନଥିଲା । ଗାଁରେ ଜନ୍ମ ହେଇ ମୋ ଜେଜେବାପାଙ୍କ ସେତେବେଳେ ଏତେ ଉନ୍ନତ ଧରଣର ଚିନ୍ତାଧାରା କେମିତି ଥିଲା ଭାବିଲେ ବଡ଼ ଆଷ୍ଚର୍ଯ୍ୟ ଲାଗୁଛି । ଆନନ୍ଦ ବି ଲାଗୁଛି । ମୋ ଜେଜେମା ଘର କାମ ଓ ଠାକୁର ପୂଜା କରି ସମୟ କାଟୁଥିଲେ । ପିଲାମାନଙ୍କର ପାଠପଢ଼ା ପ୍ରତି ତାଙ୍କର ବିରୋଧ ମନୋଭାବ ନଥିଲା । ବୋହୂମାନଙ୍କର ଚାଲିଚଳଣ ଉପରେ ବିଶେଷ କଟକଣା ନଥିଲା ।

ମୋ ନନା ୰ଦୀନବନ୍ଧୁ ରଥ ଥିଲେ ବନମାଳୀ ରଥଙ୍କର ଦ୍ୱିତୀୟ ପୁତ୍ର । ସେଥିଲେ ହୋମିଓପାଥିକ ଡ଼ାକ୍ତର । କଲିକତାରୁ ହୋମିଓପାଥିକ ଡ଼ିଗ୍ରୀ ହାସଲ କରିଥିଲେ । ଦଳେଇ ୰ ଆନନ୍ଦ ଚନ୍ଦ୍ର ରଥ ପାଟଣା ବିଶ୍ୱବିଦ୍ୟାଳୟରୁ ଡ଼ିଗ୍ରୀ ପାଇଥିଲେ ସେ ଜଣେ ସମ୍ମାନନୀୟ ବ୍ୟକ୍ତି ଥିଲେ । ତାଙ୍କର ସମାଜ ସେବା ମନୋବୃତ୍ତି ଯୋଗୁ ଗାଁ ଲୋକମାନଙ୍କ ପାଖରେ ସେ

ପୂଜ୍ୟ ଥିଲେ । ଵଡ଼େଇ ୰ କୃପାସିନ୍ଧୁ ରଥ ଓ ୰ ବାସୁଦେବ ରଥ ସରକାରୀ ଚାକିରୀ କରୁଥିଲେ । ମୋ ନନା ଗାଁ ଏବଂ ଗାଁର ଲୋକମାନଙ୍କୁ ବହୁତ ଭଲ ପାଉଥିଲେ । ସହରରେ ଚଳୁଥିଲେ ସତ କିନ୍ତୁ ଗାଁର ଆକର୍ଷଣ ତାଙ୍କର ବହୁତ ଥିଲା । ଗାଁ ଲୋକମାନେ ଅସୁସ୍ଥ ହେଲେ ନନାଙ୍କ ପାଖକୁ ଆସୁଥିଲେ ଏବଂ ନନା ସେମାନଙ୍କୁ ମାଗଣାରେ ଚିକିତ୍ସା କରୁଥିଲେ । ସାନ କକେଇ ରେଳବାଇରେ ଚାକିରି କରୁଥିଲେ । ତାଙ୍କର ନିଯୁକ୍ତି ପୁରୀରେ ହୋଇଥିଲା । ସେଥିପାଇଁ ସେ ପୁରୀରେ ରହୁଥିଲେ । ସେତେବେଳେ ରାମଚଣ୍ଡିସାହିରେ କକେଇଙ୍କ ସହ ଆମେ ଏକାଠି ରହୁଥିଲୁ । ମୁଁ ସାନ କକେଇ, ଖୁଡ଼ିଙ୍କୁ ବହୁତ ଭଲ ପାଉଥଲି । କିନ୍ତୁ ବଡ଼ କକେଇ ଓ ଖୁଡ଼ି ମୋ ପାଠ ପଢ଼ାକୁ ସମର୍ଥନ କରୁନଥିଲେ । ବଡ଼ଖୁଡ଼ି ସବୁବେଳେ ମୋ ନନାଙ୍କୁ କହୁଥିଲେ । ଝିଅକୁ ପାଠ ପଢ଼ାଇଲେ ବର ମିଳିବନି । ତେଣୁ ସେ ଘରକୁ ଆସିଲେ ମତେ ବହୁତ ଡ଼ର ଲାଗୁଥିଲା । ମୋ ନନା ତାଙ୍କ ଭାଇମାନଙ୍କୁ ବହୁତ ଭଲ ପାଉଥିଲେ । ତାଙ୍କର ଗୋଟିଏ ବୋଲି ଭଉଣୀ ଥିଲା । ତାଙ୍କ ସ୍ୱାମୀଙ୍କର ମାନସିକ ଅସୁସ୍ଥତା ଥିବାରୁ ଭଉଣୀକୁ ସେ ଅଧିକାଂଶ ସମୟରେ ପାଖରେ ରଖୁଥିଲେ । ଭଉଣୀଙ୍କର ଗାଁର ଖବର ମଧ୍ୟ ବୁଝୁଥିଲେ । ନନା, ତାଙ୍କ ଭାଇଭଉଣୀଙ୍କୁ ସବୁବେଳେ ପାଖରେ ରଖିବାକୁ ଚାହୁଁଥିଲେ । ଯଦିଓ ନନା ପୁରୀରେ ରହୁଥିଲେ ମନ ତାଙ୍କର ସବୁବେଳେ ଥାଏ ତାଙ୍କ ଗାଁରେ । ମୋର ଯେତେବେଳେ ପ୍ରଥମେ ଝିଅ ହେଲା ନନା ବହୁତ ଖୁସି ହେଲେ କାରଣ ତାଙ୍କର ପ୍ରଥମ ନାତୁଣୀ ହେଲା । ନନା ତାକୁ ନେଇ ଗାଁ କପିଳେଶ୍ୱରଙ୍କ ପାଖରେ ମୁଣ୍ଡନ କରାଇଥିଲେ ।

ଆମ ଗାଁର ମୁଁ ପ୍ରଥମ ଝିଅ ଯେକି କଲେଜ ଦ୍ୱାରରେ ପ୍ରଥମେ ପାଦ ରଖିଥିଲା । ମୋ ନନା ରକ୍ଷଣଶୀଳ ମନୋବୃତ୍ତିର ଥିଲେ । ତେଣୁ ଝିଅ ପାଠ ପଢ଼ିଲେ କିଏ କ'ଣ କହିବି ସେ ଭୟରେ ସେ ପାଠ ପଢ଼େଇବାକୁ ସମ୍ପୂର୍ଣ୍ଣ ମନା କରୁଥିଲେ । କିନ୍ତୁ ଭଲ ପଢ଼ିଲେ ସେ ଖୁସି ହେଉଥିଲେ । ବୋଉ ବହୁତ କଷ୍ଟ ସହିଷ୍ଣୁ ଥିଲେ । ବୋଉଙ୍କର ସାହିତ୍ୟ ଜ୍ଞାନ ଭଲ ଥିଲା । ବଙ୍ଗାଳୀ, ହିନ୍ଦୀ ଭାଷା ମଧ୍ୟ ବୋଉ ଜାଣିଥିଲେ । ବୋଉଙ୍କର ଚିନ୍ତାଧାରା ଉନ୍ନତ ଧରଣର ଥିଲା । ଝିଅ ଜନ୍ମ ହୋଇଛି କେବଳ ରୋଷେଇ ଘରେ ରୋଷେଇ କରିବାକୁ, ଏକଥା ସେ ଭାବୁନଥିଲେ । ତାଙ୍କ ଜୀବନଟା ଯେମିତି ଘର କଣରେ କଟିଗଲା ସୂର୍ଯ୍ୟାଲୋକ ପଡ଼ିଲାନି ତାଙ୍କ ଝିଅମାନଙ୍କ ଜୀବନରେ ସେମିତି ନଘଟୁ ବୋଲି ସେ ଭାବୁଥିଲେ ଏବଂ ଆମମାନଙ୍କୁ ମଣିଷ ଭଳି ବଞ୍ଚିବାକୁ ପ୍ରେରଣା ଦେଉଥିଲେ । ସେ ସମୟର ରକ୍ଷଣଶୀଳ ମନୋବୃତ୍ତି

 [redacted]

ମେଘନାଦ ପାଚେରୀ ଅତିକ୍ରମ କରି ମୁଁ କେମିତି ଏହି ସ୍ଥାନରେ ପହଞ୍ଚି ପାରିଛି ଏବଂ ସେଥିପାଇଁ କେତେ କଷ୍ଟ ସହିବାକୁ ପଡ଼ିଛି । ତାହା କେବଳ ଅନୁଭବୀ ହିଁ ବୁଝିପାରିବ ।

ପର୍ବପର୍ବାଣୀରେ ନନା ଆମକୁ ଦିନେ ଦୁଇଦିନ ପାଇଁ ଗାଁକୁ ବୁଲାଇବାକୁ ନେଉଥିଲେ । ସେଠାରେ ଦଦେଇ, କକେଇଙ୍କର ପୁଅ ଝିଅମାନେ ସମସ୍ତେ ଏକାଠି ହୋଇଗଲେ ଆମକୁ ବହୁତ ଖୁସି ଲାଗେ । ମନ ଖୁସିରେ ଆମେ ଖେଳୁ ବୁଲୁ ସେତେବେଳେ ଆମକୁ କେହି ବାଧା ଦିଅନ୍ତି ନାହିଁ । ତା'ଛଡ଼ା ସହରରେ ଏମିତି ଖୋଲା ଯାଗା ନଥାଏ । ମୋ ପାଇଁ ଗାଁର ଆକର୍ଷଣ ଥିଲା ଗାଁର ଶାନ୍ତ ପରିବେଶ । ପୁରୀ ସହରରେ ମୁଖ୍ୟରାସ୍ତା ଏବଂ ସିନେମା ଘର ପଡ଼ିଶା ଆମ ଘର । ସବୁବେଳେ ଗାଡ଼ି ମଟରର ହର୍ଣ୍ଣ କାନକୁ ବ୍ୟତିବ୍ୟସ୍ତ କରାଇଦିଏ । ଗାଁରେ ଆମ ଘର ସାମ୍ନା ଗୋଟିଏ ଛୋଟ ପୋଖରୀ ଅଛି । ସେ ପୋଖରୀ ସେତେବେଳେ ପରିଷ୍କାର ଥିଲା । ପୋଖରୀର ଚାରିପଟେ ଥିଲା ଆମ୍ବ, ନଡ଼ିଆ ଓ ତାଳ ଗଛ । ଆମେ ଗଲେ ପଇଡ଼ ଓ ତାଳ ତୋଳା ହୁଏ । ଗଛରୁ ତୋଳି ସାଙ୍ଗେ ସାଙ୍ଗେ ପଇଡ଼ ଖାଇବାର ସ୍ୱାଦ ଅଲଗା ।

ଗାଁକୁ ପ୍ରବେଶ କରିବା ପୂର୍ବରୁ ବଡ଼ ପୋଖରୀ ପାଖରେ ଟିକିଏ ଠିଆ ହେବାକୁ ଇଚ୍ଛା ହୁଏ । ତା' ଭିତରେ ଫୁଟିଥିବା ନାଳି କଇଁଫୁଲ ଯେପରି ହାତଠାରି ଡ଼ାକେ, ଆସ ମୋ ପାଖକୁ ଆସ । ଠାକୁର କପିଳେଶ୍ୱରଙ୍କର ମନ୍ଦିର ଅତି ପ୍ରାଚୀନ, ମନ୍ଦିରର ପରିସର ବିଶେଷ ବଡ଼ ନହେଲେ ମଧ ଠାକୁରଙ୍କର ମହିମା ଯୋଗୁ ଆଖପାଖ ଗାଁର ଲୋକମାନେ ଏଠାକୁ ଆସନ୍ତି । ଲୋକେ କହନ୍ତି ଠାକୁରଙ୍କ ପାଖକୁ ଯିଏ ଯାହା ମାନସିକ କରି ଆସେ ତାହା ନିଶ୍ଚୟ ପୂରଣ ହୁଏ । ଠାକୁରଙ୍କର ବହୁତ ପର୍ବପର୍ବାଣୀ ଅଛି । କିନ୍ତୁ ତାଙ୍କର ସବୁଠାରୁ ବଡ଼ ପର୍ବ ଅଶୋକାଷ୍ଟମୀ ଯାତ୍ରା । ଆଜିକାଲି ସବୁ ଗାଁରେ ମେଳା ମହୋତ୍ସବ ହେଉଛି ବହୁ ଜାକଜମକରେ । କିନ୍ତୁ ଆମ ଗାଁ ଅଶୋକାଷ୍ଟମୀ ଯାତ୍ରା ବହୁ ପୂର୍ବକାଳରୁ ପାଳିତ ହୋଇ ଆସୁଛି । ଗାଁର ଲୋକମାନେ ତାଙ୍କର ସମ୍ପର୍କୀୟମାନଙ୍କୁ ଯାତ୍ରା ଦେଖିବାକୁ ଡ଼ାକନ୍ତି । ଅଶୋକାଷ୍ଟମୀରେ ଠାକୁର ଆମଗାଁକୁ ଆସନ୍ତି । ସେଠାରେ ଗୋଟିଏ ମନ୍ଦିର ଅଛି । ସେହି ମାଉସୀମା ମନ୍ଦିରରେ ସେ ସାତ ଦିନ ରହିବାପରେ ନିଜ ପୀଠକୁ ଫେରନ୍ତି । ସେହି ବାହୁଡ଼ା ଯାତ୍ରାରେ ପ୍ରତିଘର ଠାକୁର ଭୋଗ ଖାଆନ୍ତି । ଠାକୁର ବାହୁଡ଼ା ଯାତ୍ରାରେ ଭେଟବାଲିରେ ପହଞ୍ଚିବା ପରେ ବାଣର ଶବ୍ଦରେ ସେହି ସ୍ଥାନ କମ୍ପିଉଠେ । ବହୁ ପ୍ରକାରର ବାଣ ଦେଖିବାକୁ

ଦୂରରୁ ମଧ୍ୟ ଲୋକମାନେ ଆସନ୍ତି । ଗାଁର ଲୋକମାନଙ୍କର ସେ ସମୟରେ ଆନନ୍ଦ କହିଲେ ନସରେ । ଏହି ଯାତ୍ରାଦିନ ହୁଏ ବନ୍ଧୁ ମିଳନ । ଭଲ ଖାଇବା ସହିତ ରାତି ଅନିଦ୍ରା ହୋଇ ସମସ୍ତେ ଏହାକୁ ଉପଭୋଗ କରନ୍ତି । ଆମେ ମଧ୍ୟ ପ୍ରତିବର୍ଷ ବାହୁଡ଼ା ଯାତ୍ରାକୁ ଗାଁକୁ ଯାଉ । ସବୁ ଭାଇଭଉଣୀଙ୍କ ସହ ଭାରି ହସଖୁସିରେ ରାତିଟିକୁ କଟାଉ । ଏବେ ମଧ୍ୟ ମଝିରେ ମଝିରେ ଆମେ ଗାଁକୁ ଯାତ୍ରାବେଳକୁ ଯାଉ । ନିଜ ପିଲାମାନେ ବାହାହୋଇ ଘର ସଂସାର କଲେଣି । ଏହି ପ୍ରାପ୍ତ ବୟସରେ ମଧ୍ୟ ଗାଁର ମୋହ ଯାଇନାହିଁ । ମୋ ଦଦେଇ ପୁଅ ଭାଇ ବିଶୁ ଭାଇନା ସବୁବେଳେ କହନ୍ତି ଯାତ୍ରାକୁ ଗାଁକୁ ନିଶ୍ଚୟ ଆସିବୁ । ଅସୁବିଧା ସୁବିଧା ନେଇ ସବୁବେଳେ ଯାଇ ହୁନାହିଁ । ତଥାପି ସୁବିଧା ହେଲେ ନିଶ୍ଚୟ ଯାଏ ।

ଆମ ଗାଁର ପରିବେଶ ସୁନ୍ଦର, ସବୁଜ ଓ ଶାନ୍ତ । ଗାଁର ଆମ୍ବତୋଟା ଓ ପଣସ ତୋଟା, ନଡ଼ିଆ ବଗିଚା ଭିତରେ ଥରେ ବୁଲି ଆସିଲେ ମନ ଖୁସି ଲାଗେ । ଗାଁର ଲୋକମାନେ ଅତି ସରଳ, ପରସ୍ପର ପ୍ରତି ସ୍ନେହ ବନ୍ଧନରେ ବାନ୍ଧି ହୋଇ ରହିଥାନ୍ତି । ମୋ ଅନୁଭୂତିରୁ ପଦେ କହୁଛି । ୧୯୭୦ ମସିହାରେ ମୁଁ ବାଲେଶ୍ୱର ଫକୀର ମୋହନ କଲେଜରେ ଅଧ୍ୟାପିକା ଭାବେ ଯୋଗ ଦେଇଥିଲି । ବୟସ ମାତ୍ର ସତେଇଶି । ମୋ ସ୍ୱାମୀ ମତେ ଭଡ଼ାଘରଟିଏ ବୁଝି ଛାଡ଼ିଦେଇ ତାଙ୍କ ଚାକିରୀ ଯାଗାକୁ ଚାଲିଗଲେ । ୩ଟି ଛୋଟ ପିଲା । ସାନ ପୁଅଟିକୁ ମାତ୍ର ୨ମାସ ହୋଇଥାଏ । କେମିତି ଏକୁଟିଆ ଚଳିବି ଭାବି ଭୟ ଲାଗୁଥିଲା । ଘର ମାଲିକ ଉପରେ ରହୁଥାନ୍ତି । ତାଙ୍କ ପାଖକୁ ଯାଇ କହିଲି ଆପଣଙ୍କ କ୍ଷୀର ବାଲାକୁ ଟିକିଏ କହିବେ ସେ ଆମ ଘରେ କ୍ଷୀର ଦେବ । ସେ ହଉ ବୋଲି କହିଲେ । ତା'ପରଦିନ ସକାଳ ପ୍ରାୟ ୮ଟା ବେଳେ କ୍ଷୀରବାଲା ଆସି ଆମ ଘରେ ଡ଼ାକିଲା । ମୁଁ କବାଟ ଖୋଲିଲି ଏବଂ ଦୁଇ ଲିଟର କ୍ଷୀର ଦେବାପାଇଁ କହିଲି । କଲେଜ ଯିବା ପାଇଁ ତରତର ହେଉଥାଏ । ତା'ପାଖରେ ଠିଆ ହେବାକୁ ମୋର ବେଳ ନଥାଏ । ସେ କିନ୍ତୁ ସେଠାରେ ଠିଆ ହୋଇ ରହିଲା । ମୁଁ ତା' ଆଡ଼କୁ ଚାହିଁଲାରୁ କହିଲା, ମୁଁ ଏଠି ଜେଲରେ ୱାର୍ଡ଼ର କାମ କରୁଛି । ୪ଟି ଗାଈ ରଖିଛି କ୍ଷୀର ବିକୁଛି । ଏଠି ବାଲେଶ୍ୱରରେ ଚାକିରୀ କରୁଛି ସିନା ଘର ମୋର ନିରାକାରପୁର ଡ଼ିଆ ଗାଁରେ । ମୋ ପାଟିରୁ ବାହାରି ପଡ଼ିଲା ମୋ ବାପଘର ମଧ୍ୟ ଡ଼ିଆ ଗାଁ । ପଚାରିଲା କାହାଘର ? ମୁଁ କହିଲି ତମେ ଆମକୁ ଚିହ୍ନିବନି । ଆମେ ସହରରେ ରହୁ । ବହୁତ ପଚାରିଲା ପରେ ମୁଁ କହିଲି ମୁଁ ଦୀନବନ୍ଧୁ ରଥଙ୍କର ଝିଅ । ତା'ପରେ ସେ ମୋ ନାଁ କହିଲା

ଏବଂ କହିଲା ଚିହ୍ନି ପାରୁନ ମତେ । ମୁଁ ପରା ପଞ୍ଚୁଗୁଡ଼ିଆ ପୁଅ । ତମ ନନା କେତେ ଔଷଧ ଦେଇ ଭଲ କରିଛନ୍ତି । ତା'ପରେ ସେ ପ୍ରତିଦିନ କ୍ଷୀର ଦେବାକୁ ଆସେ । ମୋର ଯାହା ଦରକାର ବଜାରରୁ ଆଣିଦିଏ । ଘଣ୍ଟାଏ କାଳ ପୁଅକୁ ଧରେ । ସେହି ସମୟରେ ମୁଁ ଘର କାମ ସବୁ ସାରିଦିଏ । ତା'ପରେ ମତେ ଆଉ ବାଲେଶ୍ୱରରେ ଏକୁଟିଆ ଲାଗିଲାନି । ଯାହାହେଉ ଆମ ଗାଁ ଲୋକ ପାଖରେ ଅଛନ୍ତି । ଯେତେଦିନ ମୁଁ ବାଲେଶ୍ୱରରେ ଥିଲି ସେ ମୋତେ ସାହାଯ୍ୟ କରୁଥିଲା । ଆମ ଗାଁ ଲୋକଙ୍କର ସେ ଆତ୍ମିୟତା ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ କେବେହେଲେ ଭୁଲିପାରିବିନି ।

ମୁଁ ଯାହା ଲେଖୁଛି ମୋ ଅନୁଭୂତିରୁ । ସେତେବେଳେ ଗାଁର ସେହି ସ୍ନେହ ମମତା, ଆନ୍ତରିକତା ଏବେ ଗାଁରେ ଅଛି କି ନାହିଁ ସନ୍ଦେହ । ଏବେ ପ୍ରତ୍ୟେକ ଗାଁ ଗୋଟିଏ ସହର । ଜମି ଚାଷ କରିବାକୁ କେହି ଇଚ୍ଛା କରୁନାହାନ୍ତି । ପୋଖରୀ, ଗାଡ଼ିଆ, ସେମିତି ଅପରିଷ୍କାର ହୋଇ ପଡ଼ିଛି । ଗାଁର ଉନ୍ନତି ପାଇଁ କାହାର ଚେଷ୍ଟା ନାହିଁ । ଯାହାହେଉ, ଆମ ଗାଁର ରଥ ପରିବାରର ସବୁ ପୁଅ ଝିଅ ବର୍ତ୍ତମାନ ପ୍ରତିଷ୍ଠିତ । ଆମ ବାପା, ମା ଆଉ ନାହାନ୍ତି କେବଳ ସାନଖୁଡ଼ି ଅଛନ୍ତି । ଏଇପ୍ରାପ୍ତ ବୟସରେ ମଧ୍ୟ ଖୁଡ଼ିଙ୍କ ପାଖରେ କିଛି ସମୟ ବସିଲେ ମତେ ଲାଗେ ମୁଁ ବହୁତ ସାନ ପିଲା । ସେଥିପାଇଁ ଟିକିଏ ସୁବିଧା ପାଇଲେ ମୁଁ ଖୁଡ଼ିଙ୍କ ପାଖକୁ ଚାଲିଯାଏ । ଆର ବର୍ଷ କୁମାର ପୂର୍ଣ୍ଣିମାକୁ ଗାଁରେ ସବୁ ଭାଇଭଉଣୀମାନେ ଏକାଠି ହୋଇଥିଲୁ । କେତେ ଗୀତ ବୋଲିଲୁ ଏବଂ ପୂର୍ଣ୍ଣିମା ରାତିଟିକୁ ଉପଭୋଗ କଲୁ । ସେତେବେଳେ ଭାବିପାରୁନଥିଲି ଆମେ ଏତେ ବଡ଼ ହୋଇଯାଇଛୁ । ଆମମାନଙ୍କ ମନରେ ଯେମିତି ସ୍ନେହ ଶ୍ରଦ୍ଧା ଅଛି ସେମିତି ସବୁଦିନ ରହିଥାଉ । ଆମର ଏକତା ଉପରେ ଯେମିତି କାହାର ନଜର ନଲାଗୁ । ଭଗବାନଙ୍କର ଆଶୀର୍ବାଦ ଏମିତି ରଥ ପରିବାର ଉପରେ ରହିଥାଉ । ଯେତେଦିନ ଆମେମାନେ ବଞ୍ଚିଛୁ ନୀରୋଗ ହୋଇ ବଞ୍ଚିରହୁ ଏତିକି ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।

ଲୁଇସ୍ ରୋଡ୍,
ପ୍ଲଟ ନମ୍ବର ୩୬୫୩/୫୩୦୯
ଗୌରୀନଗର



# କିଛି ସ୍ମୃତି ଓ ଅନୁଭୂତି

ଅଧ୍ୟାପକ ଶ୍ୟାମସୁନ୍ଦର ତ୍ରିପାଠୀ

୧୯୬୫ ମସିହା । ମୁଁ ଏଇବର୍ଷ ରସାୟନ ବିଜ୍ଞାନରେ ଏମ୍.ଏସ୍.ସି. ପରୀକ୍ଷା ରେଭେନ୍ସା କଲେଜରୁ ଦେଇଥିଲି । ପରୀକ୍ଷା ପରଦିନ ମୁଁ ମୋର ମଝିଆଁ ଭାଇଙ୍କ ଘରକୁ ବୁଲି ଯାଇଥାଏ । ଚଣ୍ଡୀମନ୍ଦିର ପାଖ ଖଟବିନ୍ ସାହିରେ ସେ ରହୁଥିଲେ । ତାଙ୍କର ପଡ଼ୋଶୀଥିଲେ ଦୈନିକ ସମାଜରେ କାର୍ଯ୍ୟରତ ପଣ୍ଡିତ ଗଦାଧର ମହାପାତ୍ର । ସେ ଆଗରୁ ମୋର ପରିଚିତ ଥିଲେ । ମୋତେ ଦେଖି କହିଲେ ବର୍ତ୍ତମାନ ତ ପରୀକ୍ଷା ଫଳ ବାହାରିଯାଏଁ । ତୁମର କିଛି କାମ ନାହିଁ । ଆସ ମୋ ସାଙ୍ଗରେ ନିରାକାରପୁର ଯିବ ଓ ସେଠାରେ ଥିବା ସାଇନ୍ସ କଲେଜରେ ପିଲାଙ୍କୁ ପଢ଼ାଇବ । ମୋଠାରୁ ଉତ୍ତର ଅପେକ୍ଷା ନକରି ସେ ଦିନ ଠିକ୍ କରିଦେଲେ ଓ ମୋତେ ତାଙ୍କ ସାଙ୍ଗରେ ଧରି ନିରାକାରପୁର ନେଇଗଲେ । ମୁଁ ଆଗରୁ ନିରାକାରପୁର ଦେଖିନଥାଏ । କଲେଜର ଅବସ୍ଥା ଓ ସେ ଅଞ୍ଚଳ ବିଷୟରେ ମୋର କିଛି ଧାରଣା ନଥାଏ । ରେଳ ଷ୍ଟେସନଠାରୁ କଲେଜର ଦୂରତା ଅଳ୍ପ । କଲେଜଟି ପକ୍କାଛାତର ପଥର ତିଆରି କୋଠା ଘର । E type buildingଟିଏ, କଲେଜର ପ୍ରିନ୍‌ସିପାଲ ଥାଆନ୍ତି ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ମହାପାତ୍ର, ତାଙ୍କର ଘର ଗୋଳବାଇ ଓ ତାଙ୍କ Subject Chemistery. Principal ଙ୍କ Officeରେ joining report ଦେଇ college campus ରେ ଥିବା ଗୋଟିଏ କ୍ୱାଟର୍ସରେ ରହିବାର ବ୍ୟବସ୍ଥା କରାଇ ଗଦାଧର ବାବୁ ନିକଟରେ ଥିବା ତାଙ୍କ ପାଖ ଗାଁକୁ ଚାଲିଗଲେ । Principal ମୋତେ କଲେଜରେ ଥିବା senior ଅଧ୍ୟାପକ କୁଳମଣିବାବୁ, ସୁଧାଂଶୁ ବାବୁ ଗୌରବାବୁ, ବୀରବାବୁ ଓ ଦଣ୍ଡପାଟ ବାବୁ ଆଦିଙ୍କ ସହ ପରିଚୟ କରାଇ ଦେଲେ ।

ନିରାକାରପୁର କଲେଜର ଗୋଟିଏ ପାର୍ଶ୍ୱରେ ଚିତ୍ରକୂଟ ପର୍ବତଶ୍ରେଣୀ ଓ ତା'ପାଦଦେଶରେ ଅସଂଖ୍ୟ ଆମ୍ବ, ପଣସ ବୃକ୍ଷର ଏକ ସୁରମ୍ୟ ବାଟିକା ନିକଟରେ ଗାଁ ଗୁଡ଼ିକ ହେଲା ପଦ୍ମପୁର, ରାମେଶ୍ୱର, ଗୋଳାବାଇ, ଡ଼ିଆ, କାଶୀପୁର ଓ ଲଳିତା ପାଟପୁର ଓ ହାଟ । ସ୍ଥାନୀୟ ସରକାରୀ ଉଚ୍ଚବିଦ୍ୟାଳୟର ନାମ କ୍ଷେତ୍ରବାସୀ ଏକାଡ଼େମୀ । ଏଇ କ୍ଷେତ୍ରବାସୀ କିଏ ଓ ତାଙ୍କ ନାମରେ ଏ ସବୁ ଅନୁଷ୍ଠାନ କାହିଁକି ହୋଇଛି ଏ ପ୍ରଶ୍ନ ଅଧ୍ୟାପକ ବନ୍ଧୁମାନଙ୍କୁ ପଚାରି ବସିଲି । ଯାହା ଉତ୍ତର ମିଳିଲା ତା'ର ସଂକ୍ଷିପ୍ତ ବିବରଣୀ ହେଉଛି, ସେ

ଜଣେ ଦାଦନ କଣ୍ଟ୍ରାକ୍ଟର । ପ୍ରତିଦିନ ସେ ସୁଦୂର ଆସାମ ଆଦି ସ୍ଥାନକୁ ଶହ ଶହ ଦାଦନ ଶ୍ରମିକଙ୍କୁ ନିକଟବର୍ତ୍ତୀ ଅଞ୍ଚଳରୁ ରେଳ ଯୋଗେ ପଠାନ୍ତି । ଏହି ବ୍ୟବସାୟରୁ ସେ ଲକ୍ଷପତି । ନିରାକାରପୁରରେ ତାଙ୍କ ବ୍ୟବସାୟର ଅଫିସ ଓ ଦାଦନ ଶ୍ରମିକଙ୍କ ସାମୟିକ ଆଶ୍ରୟ ପାଇଁ ଆଜବେଷ୍ଟସ ଛାତର ଏକ ଆଶ୍ରୟସ୍ଥଳୀ ରହିଛି । ନିକଟବର୍ତ୍ତୀ ଡ଼ିଆ ଗ୍ରାମର ଆନନ୍ଦ ରଥ ମହାଶୟଙ୍କ ଉଦ୍ୟମ ଦ୍ୱାରା ଏହି ସ୍କୁଲ, କଲେଜ ହେବା ସମ୍ଭବ ହୋଇଛି । ସେତେବେଳେ ରଥ ମହାଶୟ ମୋର ପରିଚିତ ନଥିଲେ ବି ତାଙ୍କର ମହତ୍ ଚେଷ୍ଟା ଓ ଏ ଅଞ୍ଚଳରେ ଶିକ୍ଷାର ପ୍ରସାର ସାମୟିକ ବିକାଶରେ ମହତ୍ ଅବଦାନ ପାଇଁ ମୋ ହୃଦୟରେ ତାଙ୍କ ପ୍ରତି ସ୍ୱତଃ ଶ୍ରଦ୍ଧା ସୃଷ୍ଟି ହେଲା । ସେ ନମସ୍ୟ ଓ ତାଙ୍କର ଅବଦାନ କାଳଜୟୀ ଏ ଧାରଣା ମୋ ମନରେ ଦୃଢ଼ୀଭୂତ ହେଲା ।

ଶିକ୍ଷାଦାନ ଦୀକ୍ଷା ବିହୀନ, ଚାଟୁକାର ପରିବେଷ୍ଟିତ କ୍ଷେତ୍ରବାସୀ ରାଉତରାଏ କେବଳ ଆନନ୍ଦଚନ୍ଦ୍ର ରଥଙ୍କୁ ବିଶ୍ୱାସ କରୁଥିଲେ । ତାଙ୍କରିଠାରୁ ଆର୍ଥିକ ଅନୁଦାନ ରଥ ମହାଶୟ ଆଣି ଏଠାରେ ଉଚ୍ଚବିଦ୍ୟାଳୟ ଓ ମହାବିଦ୍ୟାଳୟ ପ୍ରତିଷ୍ଠା କରିଛନ୍ତି ଓ ସେହି ମହାଶୟଙ୍କ ନାମରେ ନାମିତ କରାଇଛନ୍ତି । ମୋର ନିରାକାରପୁର ସ୍ୱଳ୍ପ ରହଣୀ ମଧ୍ୟରେ ଜାଣିବାକୁ ପାଇଲି କ୍ଷେତ୍ରବାସୀ ବାବୁ ପକ୍ଷାଘାତରେ ଆକ୍ରାନ୍ତ ଶଯ୍ୟାଶାୟୀ ଓ ତାଙ୍କର ପୁଅଙ୍କ ହାତରେ ଦାଦନ ବ୍ୟବସାୟର ପରିଚାଳନା ଦାୟିତ୍ୱ ନ୍ୟସ୍ତ ।

କଲେଜକୁ ଲାଗିଥିବା ଏକ ବଡ଼ କମ୍ପାଉଣ୍ଡ ଥିବା ବଗିଚା ଓ ତା' ମଧ୍ୟରେ ଥିବା କୋଠାଘର ରଥ ମହାଶୟଙ୍କ ସାନ ଭାଇ କୃପାସିନ୍ଧୁ ରଥଙ୍କର ବୋଲି ଶୁଣିଥାଏ । ନିରାକାରପୁରରେ ଥିଲା ବେଳେ ମୁଁ ଡ଼ିଆ, କାଶୀପୁର, ରାମେଶ୍ୱର ପାଟପୁର ଆଦି ଗାଁ ବିଭିନ୍ନ ଉତ୍ସବ ଅନୁଷ୍ଠାନ ଆଦିରେ କଲେଜ ଅଧ୍ୟାପକଙ୍କ ଗହଣରେ ଦେଖିବାର ଅବକାଶ ପାଇଛି । କଲେଜରେ ଚାକିରି କରୁଥିବା ଅଧିକାଂଶ କର୍ମଚାରୀଙ୍କ ଘର ନିକଟବର୍ତ୍ତୀ ଗାଁ ମାନଙ୍କରେ । ମୋ ନିରାକାରପୁରରେ ରହଣୀ ସମୟରେ ରଥ ମହାଶୟଙ୍କ ବଡ଼ପୁଅ ବିଶ୍ୱନାଥ (ବିଶୁଭାଇନା) ବାବୁଙ୍କୁ ସ୍ଥାନୀୟ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକ ଥିବା ଦେଖିଥିଲି । ସେ ତାଙ୍କର ବନ୍ଧୁ ଗହଣରେ ଦ୍ୱାରୀବାବୁଙ୍କ ସହ ନିରାକାରପୁର ବଜାରକୁ ପ୍ରତି ସଂଧ୍ୟାରେ ଆସନ୍ତି । ନିରାକାରପୁର ଛାଡ଼ି ମୁଁ କଲିକତା Medical College ମଧ୍ୟରେ ଥିବା School of Tropical Medicine ରେ ଉଚ୍ଚତର ଗବେଷଣା ପାଇଁ ଚାଲିଗଲି ।

କଲେଜରେ କାର୍ଯ୍ୟରତ ଥିବା ସମୟରେ ସ୍ୱର୍ଗତଃ ଆନନ୍ଦରଥଙ୍କର କନିଷ୍ଠ ସ୍ୱର୍ଗତଃ ଦୀନବନ୍ଧୁ ରଥଙ୍କ କନିଷ୍ଠ କନ୍ୟା ସହିତ ମୋ ବିବାହ ସମ୍ପନ୍ନ ହେଲା ଓ ରଥ ପରିବାର ସହିତ ମୋର ପରିଚୟ ଓ ଘନିଷ୍ଠତା ସୃଷ୍ଟି ହେଲା । ମୋ ଶ୍ୱଶୁର ଡ଼ାକ୍ତର ଦୀନବନ୍ଧୁ ରଥ ଜଣେ ସୁନାମଧନ୍ୟ ହୋମିଓ ପ୍ୟାଥିକ ଡ଼ାକ୍ତର । ତାଙ୍କ ଲିଖିତ ''ହୋମିଓ ପ୍ୟାଥିକ ଗୃହ ଚିକିତ୍ସା'' ଓ ''ମେଟେରିଆ ମେଡ଼ିକା'' ଓଡ଼ିଶାର ପୁରପଲ୍ଲୀରେ ବହୁଳ ଆଦୃତ । ବହୁ ପୁରାତନ ଜଟିଳ ରୋଗର ସେ ଥିଲେ ସଫଳ ଚିକିତ୍ସକ । ସମ୍ପୂର୍ଣ୍ଣଭାବେ ତାଙ୍କ ଜୀବନ ଜଗନ୍ନାଥ ସମର୍ପିତ ଥିଲା । ନିତ୍ୟ ସକାଳ ଓ ସଂଧାରେ ଜଗନ୍ନାଥ ଦର୍ଶନ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ତାଙ୍କର ଦୁଇ ଝିଅ ଓ ଗୋଟିଏ ପୁଅ । ସମସ୍ତେ ଉଚ୍ଚଶିକ୍ଷିତ ଓ ପ୍ରତିଷ୍ଠିତ ।

ଆନନ୍ଦ, ଦୀନବନ୍ଧୁ କୃପାସିନ୍ଧୁ ଓ ବାସୁଦେବ ଚାରି ଭାଇ ଏକମାତ୍ର ଭଉଣୀ ସେବତୀ । ସେବତୀ ନାନୀ ଆମ ଗାଁର ସବୁଠାରୁ ବିତ୍ତଶାଳୀ ଆଚାର୍ଯ୍ୟ ପରିବାରର ବୋହୂ ଥିଲେ । ଆମ ଗାଁରେ ତାଙ୍କ ଘରକୁ ''ହାତୀଘର'' ବୋଲି କହନ୍ତି । ତାଙ୍କର ହାତୀ ଥିଲାଓ ହାତୀଶାଳ ବି ଥିଲା । ମୋ ପିଲାବେଳକୁ ତାଙ୍କର ସବୁ ସମ୍ପତ୍ତି ଚାଲି ଯାଇଥିଲା । ଯୌବନରେ ସେବତୀ ନାନୀ ଅପରୂପା ସୁନ୍ଦରୀ ଥିଲେ । ଅଭିଶପ୍ତ ସେ ଆଚାର୍ଯ୍ୟ ପରିବାର ।

ନମସ୍ୟ ଆନନ୍ଦବାବୁ ମୋର ଜ୍ୟେଷ୍ଠ ଶ୍ୱଶୁର ଦିନେ ହେବେ ଏ କଳ୍ପନା ମୋ ଭିତରେ ନଥିଲା । ତାଙ୍କ ତଳଭାଇ ଦୀନବନ୍ଧୁ ମୋ ଶ୍ୱଶୁର । ଦୀନବନ୍ଧୁଙ୍କ ତଳ କୃପାସିନ୍ଧୁ ଅବକାରୀ ଇନ୍ସପେକ୍ଟର ଓ ସବାତଳ ବାସୁଦେବ ରେଳ ବିଭାଗରେ ଚାକିରି କରୁଥିଲେ । ପରଲୋକପ୍ରାପ୍ତ କୃପାସିନ୍ଧୁଙ୍କର ଜୋଇଁମାନେ ଉଚ୍ଚ ଶିକ୍ଷିତ ଓ ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । ମୁଁ ବାସୁ ପକେଇଙ୍କ ସହ ବହୁତ ମିଶିଛି କାରଣ ସେ ମୋ କର୍ମସ୍ଥଳୀ ଭୁବନେଶ୍ୱର ଷ୍ଟେସନରେ କାର୍ଯ୍ୟରତ ଥିଲେ । ବଡ଼ ସ୍ନେହୀ ଅତି ଆପଣାର ଭଳି ଲାଗନ୍ତି । ତାଙ୍କ ପାଖରେ ଥିଲେ ସେ ଶ୍ୱଶୁର ଓ ମୁଁ ଜୋଇଁ ଏ ଧାରଣା ମନରେ ରହେନି । ସମସ୍ତେ ଅଧୁନା ସ୍ୱର୍ଗବାସୀ କେବଳ ସାନଖୁଡ଼ୀ ଜୀବିତ । ସାନଖୁଡ଼ୀ ମୋତେ କାହିଁକି ବହୁତ ଭଲ ଲାଗନ୍ତି । ମୁଁ ଜାଣେନି । କକେଇଙ୍କ ପୁଅମାନେ ପ୍ରତିଷ୍ଠିତ । ମୋ ଶାଶୁ ଲକ୍ଷ୍ମୀ ଦେବୀ ପ୍ରକୃତରେ ଲକ୍ଷ୍ମୀ ଥିଲେ । ବିଶେଷ ପାଠ ପଢ଼ିନଥିଲେ ବି ତାଙ୍କର ଜ୍ଞାନର ଗଭୀରତା ନିକଟରେ ମୁଁ ନତମସ୍ତକ । ତାଙ୍କ ଅକ୍ଷରଗୁଡ଼ିକ ଅତି ସୁନ୍ଦର । ତାଙ୍କ ପରି ସ୍ୱାମୀ ସର୍ବସ୍ୱନାରୀ ପ୍ରକୃତରେ ବିରଳ । ଡ଼ିଆର ଗଦାଭାଇନା ଓ ତାଙ୍କ ସ୍ତ୍ରୀ ରେଣୁ ଭାଉଜ ମୋରି ଅତି ଅନ୍ତରଙ୍ଗ ।

ବଡ଼ ଶ୍ୱଶୁର ଆନନ୍ଦବାବୁଙ୍କ ଚାରି ପୁଅ ଓ ଦୁଇ ଝିଅ । ବଡ଼ ପୁଅ ବିଶ୍ୱନାଥ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ । ତାଙ୍କ ତଳ ଅବସରପ୍ରାପ୍ତ ବିଚାରପତି ବୁଲୁ ଭାଇନା ଓ ତାଙ୍କ ତଳ ଅବସରପ୍ରାପ୍ତ ଡ଼ାକ୍ତର ରବି ଭାଇବା ଓ ସବା ସାନ ଲାଲା, ବଡ଼ ଝିଅ କୁନୀ କଟକରେ ଅବସରପ୍ରାପ୍ତ ବିଚାରପତି ସ୍ୱର୍ଗତଃ ସଦାଶିବ ଭାଇନାଭ୍‌କ ସହଧର୍ମାଣୀ ଓ ସାନଝିଅ କଲ୍ୟାଣୀ କାଶୀପୁର ବ୍ରହ୍ମଘରର ସ୍ୱର୍ଗତଃ ଦ୍ୱାରିକାନାଥଙ୍କ ପତ୍ନୀ । ଗତବର୍ଷ ଡ଼ିଆରେ ଅନୁଷ୍ଠିତ କୁଆଁର ପୁନେଇ ସନ୍ଧ୍ୟାରେ Rath familyଙ୍କ ଆୟୋଜିତ ବନ୍ଧୁ ମିଳନ ଅବସରରେ ପରିଣତ ବୟସର କୁନୀ ନାନୀଙ୍କ ମଧୁର କଣ୍ଠରେ ଜଣାଣ ମୋତେ ଭାବବିହ୍ୱଳ କରିଥିଲା । ତାଙ୍କ ଝିଅ ଗାଇଥିବା ଗୀତଟି ଗୀତର Original singer ଙ୍କ ସ୍ୱରଠାରୁ କୌଣସି ଗୁଣରେ ନ୍ୟୁନ ନଥିଲା ।

ଡ଼ିଆ ଗାଁଟି ଗୋଟିଏ ଛୋଟ ବ୍ରାହ୍ମଣ ଶାସନ ଗାଁର ଆରମ୍ଭରେ ଏକ ଜଳାଶୟ (ବଡ଼ ପୋଖରୀ) ଗାଁରେ ଥିବା କପିଳେଶ୍ୱର ମନ୍ଦିର ପୁରୀ ଜଗନ୍ନାଥ ମନ୍ଦିରଠାରୁ ପୁରାତନ । ଏଠାରେ ପ୍ରତିବର୍ଷ ଅଶୋକାଷ୍ଟମୀ ତିଥିରେ ଠାକୁରଙ୍କ ରଥଯାତ୍ରା ସମ୍ପନ୍ନ ହୁଏ । ଗାଁ ଦାଣ୍ଡର ଦୁଇପଟ ଘର ଓ ଘର ସାମ୍ନାରେ ଅନେକ ନଡ଼ିଆଗଛ । ଚାକିରୀରୁ ଅବସର ନେଲାପରେ ମୁଁ ଅନେକଥର ବୁଢ଼ୀନାନୀ, ନାନୁ ଓ ମୋ ସହଧର୍ମିଣୀ ଟୁକୁ ସହିତ Rath family (ପୂଜ୍ୟ ସ୍ୱର୍ଗୀୟ ଆନନ୍ଦରଥ) ଘରକୁ ଯାଇ ବନ୍ଧୁମିଳନରେ ଓ ବିବାହଆଦି ଶୁଭକର୍ମରେ ଯୋଗଦେଇଛି । ଏଇ ଅବସରରେ ରଥ ପରିବାରର ସମସ୍ତଙ୍କ ସହିତ ମିଶିବାର ସୌଭାଗ୍ୟ ପାଇଛି । ପରିଣତ ବୟସରେ ବନ୍ଧୁ ମିଳନ ଓ ପରସ୍ପର ସହିତ ଦୁଃଖ ସୁଖର ଭାବ ବିନିମୟ ହିଁ ଅବଶିଷ୍ଟ ଜୀବନକୁ ଅଧିକ ସରସ ସୁନ୍ଦର ରୂପେ ବିତାଇବାର ଏକ ଉତ୍ତମ ପାଥେୟ ।

୧୦୪୧, ପ୍ରଶାନ୍ତି ବିହାର, ବରମୁଣ୍ଡା
ଭୁବନେଶ୍ୱର-୩
ଫୋନ-୯୭୭୭୮୮୪୦୭୩



# ମୋ ଗାଁକୁ ମୁଁ ଯେପରି ଜାଣେ

ଦେବ ପ୍ରସାଦ ରଥ

ମୋ ଗାଁ ମୋର ହୃଦୟରେ ବିରାଜମାନ । ଗାଁ ନାମ ଶୁଣିଲେ ମନରେ ଖୁସିର ଲହରି ଖେଳିଯାଏ । ଗାଁର ଜୀବନ ଶୈଳୀ ସହରର ଜୀବନ ଶୈଳୀ ମଧ୍ୟରେ ଅନେକ ଫରକ ରହିଛି । ସହରୀ ଜୀବନ ଗତାନୁଗତିକ । ଗ୍ରାମ୍ୟ ଜୀବନ ସରଳ, ନିଷ୍କପଟ । କିନ୍ତୁ ବର୍ତ୍ତମାନ ଗ୍ରାମ୍ୟ ଜୀବନର ଅପସଂସ୍କୃତି ଧିରେ ଧିରେ ପ୍ରବେଶ କଲାଣି । କେବଳ ଯୁଗ ପରେ ଯୁଗରୁ ଗଢ଼ି ଆସୁଥିବା ପରମ୍ପରା ଗାଁର ଜନଗଣଙ୍କୁ କେତାର ରଜ୍ଜୁରେ ବାନ୍ଧି ରଖିଛି ଏହା ଏକମାତ୍ର ଆଶ୍ୱାସନାର ବିଷୟ । ସେ ଯାହା ହେଉ ପ୍ରକୃତି ପ୍ରେମୀଙ୍କୁ ଗାଁର ନୈସର୍ଗିକ ପରିବେଶ ବିଶେଷ ଆକୃଷ୍ଟ କରେ । ଗାଁର ବିଶୁଦ୍ଧ ଜଳବାୟୁ, ଚିତ୍ରକୂଟ, ରାମେଶ୍ୱର ପାହାଡ଼, ଆମ୍ବତୋଟା, ଗାଁର ପୁଷ୍କରଣୀ, ଗାଁର ନଦୀ, ଗାଁର ଧାନକ୍ଷେତ ମନରେ ପୁଲକ ସୃଷ୍ଟି କରେ ।

ଆମ ଗାଁ ଖୋର୍ଦ୍ଧା ଜିଲ୍ଲାର ନିରାକାରପୁର ପଞ୍ଚାୟତରେ ଅବସ୍ଥିତ । ବ୍ଲକ ଟାଙ୍ଗୀ ଯାହାକି ନିରାକାରପୁରଠାରୁ ୧୭କି.ମି. ଦୂରେ ରହିଛି । ନିରାକାରପୁର ରେଳଷ୍ଟେସନରୁ ମାତ୍ର ୩ କି.ମି. ଦୂରରେ ଆମର ଡ଼ିଆ ଗାଁ ପଡ଼େ । ଗାଁର କକ୍ଷ ସଂସ୍କୃତି, ପର୍ବପର୍ବାଣୀର ସ୍ୱତନ୍ତତା ରହିଛି । ସେଥି ମଧ୍ୟରୁ ଚୈତ ମାସରେ ପଡ଼େ ପ୍ରସିଦ୍ଧ ଅଶୋକାଷ୍ଟମୀ ରଥଯାତ୍ରା । ବର୍ଷ ମଧ୍ୟରେ ହୋ ସବୁଠାରୁ ବଡ଼ ପର୍ବ ବୋଲି କୁହାଯାଏ । ଏହି ରଥଯାତ୍ରାର ସ୍ୱତନ୍ତ୍ରତା, ବୈଚିତ୍ର୍ୟ ରହିଛି । ଦେଶ ବିଦେଶରେ ରଥଯାତ୍ରା ଦିନର ସୂର୍ଯ୍ୟକିରଣରେ ଅନୁଷ୍ଠିତ ହେଲାବେଳେ ଆମ ଗାଁ ଅଶୋକାଷ୍ଟମୀ ରଥଯାତ୍ରା ରାତ୍ରିର ଘନ ଅନ୍ଧକାର ଅର୍ଥାତ୍ ମଧ୍ୟରାତ୍ରିରେ ଅନୁଷ୍ଠିତ ହେବା ବାସ୍ତବିକ ଏକ ନିଆରା ପରମ୍ପରା । ରଥଯାତ୍ରା ରାତ୍ରିରେ ଅନୁଷ୍ଠିତ ହେଲେ ମଧ୍ୟ କୌଣସି ଦୁର୍ଘଟଣା ଘଟିବାର ନଜିର ନାହିଁ । ପ୍ରାଚୀନ କାଳରେ ମଶାଲ ଧରି ରଥଯାତ୍ରା ଅନୁଷ୍ଠିତ ହେଉଥିଲା ବେଳେ ଆଜିର ଆଧୁନିକ ଯୁଗରେ ଜେନେରେଟର ଲାଇଟରେ ରଥଯାତ୍ରା ଅନୁଷ୍ଠିତ ହେଉଛି । ଭକ୍ତମାନଙ୍କ ପ୍ରବଳ ଉତ୍ସାହ ମଧ୍ୟରେ ରଥ ଦଉଡ଼ି ଟଣାଯାଇ ରଥ ଭେଟବାଲିରେ ପହଞ୍ଚିଲା ପରେ ବାଣ ଭୋଗ ହୋଇ ଆଖପାଖ ଗାଁମାନଙ୍କ ମଧ୍ୟରେ ଆକର୍ଷଣୀୟ ଆତସବାଜୀର ପ୍ରତିଯୋଗୀତା ହୁଏ । ଏହା ଗ୍ରାମାଞ୍ଚଳରେ ଅବସ୍ଥିତ ହୋଇଥିବାରୁ ପ୍ରଚାର ପ୍ରସାର ଅଭାବରୁ ଏହା ଏହି ଅଞ୍ଚଳର ମଧ୍ୟରେ ସୀମିତ ରୁହେ । ଏହି

ଆତସବାଜୀ ପ୍ରତିଯୋଗୀତା ଯଦି ସହରାଞ୍ଚଳରେ ହୁଅନ୍ତା ତେବେ ଦେଶବିଦେଶରେ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରୁଥାନ୍ତା ଓ ଏହାର ପ୍ରଚାର ହେଉଥାନ୍ତା ।

ଗାଁର ଅନତି ଦୂରରେ ଅବସ୍ଥିତ ପ୍ରାଚୀନ ଶ୍ରୀ ଶ୍ରୀ କପିଳେଶ୍ୱର ମନ୍ଦିର କଳା ସଂସ୍କୃତିର ନିଦର୍ଶନ ବହନ କରେ । ମନ୍ଦିର ସମ୍ମୁଖସ୍ଥ ପଦ୍ମ ପୁଷ୍କରଣୀ ଅତ୍ୟନ୍ତ ମନମୁଗ୍ଧକର । ଗାଁର ପ୍ରବେଶ ପଥ ବଡ଼ପୋଖରୀ କୂଳରେ ଅବସ୍ଥିତ ଗ୍ରାମଦେବୀ ସିଂହେଶ୍ୱରୀ ମନ୍ଦିର ରହିଛି । ପ୍ରତ୍ୟକ୍ଷ ଠାକୁରାଣୀ ସିଂହେଶ୍ୱରୀ ମତନସ୍ତକ କରି ଗାଁ ଭିତରକୁ ଯିବାର ବିଧି ରହିଛି । ତା'ପରେ ପଡ଼େ ରାଧାକୃଷ୍ଣଙ୍କ ମନ୍ଦିର । ଅଶୋକାଷ୍ଟମୀ ରଥଯାତ୍ରାରେ ଠାକୁରମାନେ ଶ୍ରୀ ଶ୍ରୀ କପିଳେଶ୍ୱର ମନ୍ଦିରରୁ ବାହାରି ରାଧାକୃଷ୍ଣ ମନ୍ଦିରରେ ଅବସ୍ଥାନ କରନ୍ତି ବାହୁଡ଼ାଯାତ୍ରା ପର୍ଯ୍ୟନ୍ତ । ନିରାକାରପୁର ନିକଟସ୍ଥ ଖରସ୍ରୋତା ମନ୍ଦାକିନୀ ନଦୀ (କଥିତ ଭାଷାରେ ମଲାଗୁଣି ନଦୀ) ଗାଁର ଶୋଭା ବର୍ଦ୍ଧନ କରେ ।

ଆମ ଗାଁ ଏକ ବଡ଼ ବ୍ରାହ୍ମଣ ଶାସନ । ଅବ୍ରାହ୍ମଣମାନେ ମଧ୍ୟ ବସବାସ କରନ୍ତି । ଗାଁର ଜନସାଧାରଣ ସ୍ନେହଶ୍ରଦ୍ଧା ଭ୍ରାତୃତ୍ୱ ବନ୍ଧନରେ ବନ୍ଧା । ଗାଁର ପର୍ବପର୍ବାଣୀ ମଧ୍ୟରେ ସବୁଠାରୁ ବଡ଼ ଅଶୋକାଷ୍ଟମୀ ରଥଯାତ୍ରାରେ ଶ୍ରୀ ଶ୍ରୀ କପିଳେଶ୍ୱର ମନ୍ଦିରରୁ ହରିବୋଲ ଶବ୍ଦରେ ଶ୍ରଦ୍ଧାଳୁମାନଙ୍କ ଦ୍ୱାରା ରଥ ଟଣା ଯିବା ଦୃଶ୍ୟ ମନରେ ସ୍ଥାୟୀ ଛାପ ରହିଯାଇଛି ।

ଆମର ଗୁରୁଜନ ପରିବାରର ମୁଖ୍ୟ ନନା ବର୍ତ୍ତମାନ ଇହ ଧାମରେ ନାହାନ୍ତି । ଗତ ୨୦୦୩ ମସିହାରେ ତାଙ୍କର ପରଲୋକ ଘଟିଥିଲା । ସେ ଅତ୍ୟନ୍ତ ସ୍ନେହବତ୍ସଳ ମେଳାଳୀ ସ୍ୱଭାବର ଲୋକ ଥିଲେ । ସେ ଥିଲେ ଅଜାତଶତ୍ରୁ । କୌଣସି ଲୋଭ ତାଙ୍କର ନଥିବା ତାଙ୍କ ଚରିତ୍ରର ମହତ୍ୱ ରଖେ । ନନା ଥିଲେ ରେଳବାଇର ଜଣେ ନିଷ୍ଠାବାନ କର୍ମଚାରୀ । ରେଳବାଇ ପ୍ରଶାସନ ପକ୍ଷରୁ ତାଙ୍କର କର୍ତ୍ତବ୍ୟନିଷ୍ଠା ପାଇଁ କେତେଥର ପୁରସ୍କୃତ ହୋଇଛନ୍ତି । ଅଶୋକାଷ୍ଟମୀର ବାହୁଡ଼ା ଦିନ ବିଛଣା ଚାଦର ବନ୍ଧା ହୁଏ । ମୁଁ, ବୋଉ, ନନା ହାଓଡ଼ା ପାସେଞ୍ଜର ରେଳଗାଡ଼ିରେ ଖୋର୍ଦ୍ଧାରୋଡ୍ ଷ୍ଟେସନରେ ପହଞ୍ଚୁ । ସେଠାରୁ ରେଳଯାତ୍ରୀଙ୍କ ଅତି ପରିଚିତ 'ମାଛ ଗାଡ଼ିରେ' ଗାଁର ନିରାକାରପୁର ଷ୍ଟେସନରେ ପହଞ୍ଚୁ । ସେତେବେଳେ ନିରାକାରପୁର ଷ୍ଟେସନରେ ପ୍ଲାଟଫର୍ମ ବର୍ତ୍ତମାନର ଲେଭେଲ କ୍ରସିଂ ନିକଟରେ ଥିଲା । ରାତିରେ ଗବେଷଣା କରିବା ପାଇଁ ଯୋଗଦେଲି । ସେତେବେଳର ନିରାକାରପୁର ରୂପ ଓ ବର୍ତ୍ତମାନର ରୂପ ମଧ୍ୟରେ ଆକାଶପାତାଳ ପ୍ରଭେଦ ରହିଛି ।

ଡ଼ିଆ ଗ୍ରାମ ଏକ ବୃହତ ଗ୍ରାମ । ଦୁଇ ପାର୍ଶ୍ୱରେ ବାସଗୃହ ଲମ୍ବିଯାଇଛି ଏକ ସରଳରେଖା ପରି । ପିଲାଦିନର ଅନେକ ସ୍ମୃତି ଉଙ୍କି ମାରେ । ଗାଁର ଦାଣ୍ଡବାଡ଼ି ପୋଖରୀ, ବଡ଼ ପୋଖରୀ, ଦିଅଁଙ୍କ ପୋଖରୀରେ ଗାଧୋଇବାର ମଜା ନିଆରା । ଦାନ୍ତ କାଠି, ଡ଼ାଳ ଧରି ନିତ୍ୟକର୍ମ ସାରିବାକୁ ବିଲକୁ ପଡ଼ିଆକୁ ଯିବାର ଅନୁଭୂତି ସହରରେ ନଥାଏ । ପିଲାଦିନରେ ଟିଉସନ୍ ସାର୍ ସ୍ୱର୍ଗତ ଫକୀର ମହାପାତ୍ର ଧାନକଟା ଛୁଟୀରେ ତାଙ୍କ ଗାଁକୁ ଯାଉଥିଲେ । ସେହିପରି ମୁଁ ଧାନକଟାରେ ବହୁଥର ଗାଁକୁ ଯାଇଛି ଓ ବଡ଼ ଦଦେଇଙ୍କ ଘରେ ରହେ । ଚାଷୀ ପରିବାରର ସଦସ୍ୟ ଦା'ଧରି ବିଲରୁ ଧାନକାଟୁ ଥିବା ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର । ଧାନ କଟା ପରେ ଧାନ ଅମଳ ପାଇଁ ବେଙ୍ଗଲା ପଡ଼େ । ବେଙ୍ଗଲା ପଡ଼ିବା ବେଳେ ବଳଦମାନଙ୍କୁ ପାଞ୍ଚଣରେ ମାରି ହିଁ ଡ଼ିହି ଡ଼ିହି କହିବା ରାତି ପାହାନ୍ତାରେ ମୁଁ ଶୁଣିଛି ଯାହାକି ଏପର୍ଯ୍ୟନ୍ତ ମନରେ ରହିଛି । ଥରେ ଜୟା ଦଦେଇଙ୍କ ସାଙ୍ଗରେ ପିଲାବେଳେ ମୁଁ ପୁରୀରୁ ଗାଁକୁ ଯାଇଥିଲି ଯାହାକି ଏକ ଅଭୁଲା ସ୍ମୃତି ହୋଇ ରହିଛି । ରାତିରେ ତାଙ୍କ ଘରେ ମୋତେ ରହିବାକୁ ପଡ଼ିଥିଲା । ସେତେବେଳେ ଇଲେକ୍ଟ୍ରିକ୍ ଲାଇଟ ନଥିଲା । ଲଣ୍ଠନ ଲାଇଟର ବ୍ୟବହାର ହେଉଥିଲା । ମୋତେ ଏକୁଟିଆ ଘୋର ଅନ୍ଧାରରେ ଛାଡ଼ି ସେ ଲଣ୍ଠନ ଲାଇଟ ଧରି ଘରୁ ଗାଁର ଅନ୍ୟ ଜଣଙ୍କ ଘରକୁ ଚାଲିଗଲେ ଯାହାକି ମୋ ମନରେ ଭୀଷଣ ଭୟର ସଂଚାର କରିଥିଲା । ମୁଁ ଘରର ବାହାର ବାରଣ୍ଡାରେ ଛିଡ଼ା ହୋଇ ଏକ ଲୟରେ ଲଣ୍ଠନ ଲାଇଟକୁ ଚାହିଁଥାଏ । କିଛି ସମୟ ପରେ ଲଣ୍ଠନ ଲାଇଟ ଅଦୃଶ୍ୟ ହୋଇଗଲା । ପୁଣି ଜୟା ଦଦେଇ ଲଣ୍ଠନ ଲାଇଟ ଧରି ଫେରନ୍ତା ରାସ୍ତାରେ ଆସିଲା ବେଳେ ମୋ ମନରେ ଦମ୍ଭ ଆସିଥିଲା । ନିରାକାରପୁରସ୍ଥିତ ଷ୍ଟେସନ ପାଖ ମଣିମ ତୋଟାରୁ ଆମ୍ବ ପଣସ ତୋଳା ଓ ବଗିଚାରୁ ଆମ୍ବ, ସପଟା ତୋଳାର ଦୃଶ୍ୟ ଏ ପର୍ଯ୍ୟନ୍ତ ଆଖି ଆଗରେ ନାଚି ଯାଉଛି ।

ସର୍ବଦା ରଥ ପରିବାର ଜନହିତକର କାର୍ଯ୍ୟରେ ଉତ୍ସର୍ଗୀକୃତ ଏହାର ପୂର୍ବରୁ ଦୃଷ୍ଟାନ୍ତ ରହିଛି । ଏହି ପରିପ୍ରେକ୍ଷୀରେ ପ୍ରାଚୀନ ଶ୍ରୀ ଶ୍ରୀ କପିଳେଶ୍ୱର ମନ୍ଦିର, ସାଂସ୍କୃତିକ ଏକତାର ବାର୍ତ୍ତାବହନ କରୁଥିବା ପ୍ରସିଦ୍ଧ ଅଶୋକାଷ୍ଟମୀ ରଥଯାତ୍ରା, ରାମେଶ୍ୱର ପାହାଡ଼ର ପାଦଦେଶରେ ବହିଯାଉଥିବା ମଳାଗୁଣୀ ନଦୀରେ ନୌଚାଳନା, ପର୍ଯ୍ୟଟକଙ୍କ ପାଇଁ ନିର୍ମିତ ପାନ୍ଥିକାରେ ବିଶ୍ରାମ, ଭୋଜନର ବ୍ୟବସ୍ଥା ଜଗନ୍ନାଥ ସଡ଼କରେ ନିରାକାରପୁର ଦେଇ ଚିଲିକା, ପୁରୀକୁ ଗମନାଗମନର ସୁବିଧା, ନିରାକାରପୁର ନିକଟସ୍ଥ ପ୍ରସିଦ୍ଧ ଶକ୍ତି ପୀଠ ଉଗ୍ରତାରା, ମନ୍ଦିର, ଚିଲିକା ପାଦଦେଶରେ ଅବସ୍ଥିତ ମଙ୍ଗଳାଯୋଡ଼ି ପକ୍ଷୀ ଅଭୟାରଣ୍ୟ,

ଚିତ୍ରକୂଟ, ରାମେଶ୍ୱର ପାହାଡ଼ରେ ଟ୍ରେକିଂରେ ମଜା ନେବା ଇତ୍ୟାଦି ପର୍ଯ୍ୟଟନର ପର୍ଯ୍ୟାପ୍ତ ଭିତ୍ତିଭୂମି ରହିଥିବାରୁ ଏହାକୁ ରାଜ୍ୟର ଏକ ପର୍ଯ୍ୟଟନ କେନ୍ଦ୍ରର ମାନ୍ୟତା ଦେବାକୁ ସରକାରଙ୍କ ନିକଟରେ ଦାବୀ କରିବାକୁ ରଥ ପରିବାର ପକ୍ଷରୁ ଉଦ୍ୟମ କରାଯିବାର ଆବଶ୍ୟକତା ରହିଛି । ଏହାଛଡ଼ା ଜଗନ୍ନାଥ ସଡ଼କରେ ନିରାକାରପୁର ବଜାର ଲେଭେଲ୍ କ୍ରସିଂର ରେଲ ଲାଇନ ଉପରେ ଏକ ଫ୍ଲାଇ ଓଭରବ୍ରିଜ କରାଯିବାକୁ ବୃହତ ରଥ ପରିବାର ପକ୍ଷରୁ ରେଳବାଇ ପ୍ରଶାସନ ଓ ରାଜ୍ୟ ସରକାରଙ୍କ ନିକଟରେ ଦାବୀ ଉପସ୍ଥାପିତ କରାଗଲେ ଏହା ବାସ୍ତବରେ ପରିଣତ ହୋଇପାରିବ ।

ବୃହତ ରଥ ପରିବାର କହିଲେ, ଚାରି ଭ୍ରାତା ଓ ଏକ ଭଗିନୀ । ସ୍ୱର୍ଗତ ଆନନ୍ଦ ରଥ, ସ୍ୱନାମଧନ୍ୟ ଶିକ୍ଷାବିତ୍ ତଥା ସମାଜସେବୀ, ହୋମିଓପ୍ୟାଥିକ ଡ଼ାକ୍ତର ୰ ଦୀନବନ୍ଧୁ ରଥ ଯେ କି ଡ଼ାକ୍ତରି ପେଷାକୁ ସମାଜର କଲ୍ୟାଣରେ ନିୟୋଜିତ କରିଥିଲେ, ସରକାରୀ କର୍ମଚାରୀ ଅବକାରୀ ବିଭାଗରେ ନିଯୁକ୍ତି ପ୍ରାପ୍ତ ୰ କୃପାସିନ୍ଧୁ ରଥ ଓ ରେଳବାଇରେ ନିଯୁକ୍ତି ପ୍ରାପ୍ତ ସରକାରୀ କର୍ମଚାରୀ ସ୍ୱର୍ଗତ ବାସୁଦେବ ରଥ ଏବଂ ଏକ ମାତ୍ର ଭଗିନୀ ସ୍ୱର୍ଗତା ସେବତୀ ଦେବୀ । ଏହା ହେଉଛି ବୃହତ ରଥ ପରିବାରର ଆଦ୍ୟରେ । ତା'ପରେ ପରବର୍ତ୍ତୀ ପିଢ଼ି ଆନନ୍ଦ ରଥଙ୍କ ଚାରି ସୁପୁତ୍ର ଶ୍ରୀ ବିଶ୍ୱନାଥ ରଥ ଲବ୍ଧ-ପ୍ରତିଷ୍ଠିତ ଶିକ୍ଷାବିତ୍, ଆଇନବିତ୍ ଶ୍ରୀ ସୁଭାଷ ଚନ୍ଦ୍ର ରଥ, ଡ଼ାକ୍ତର ଓ ସାହିତ୍ୟକ ହିସାବରେ ପରିଚିତ ରବି ନାରାୟଣ ରଥ, ବ୍ୟବସାୟୀ ଶ୍ରୀ ଲଲାଟେନ୍ଦୁ ରଥ, ଭଗିନୀ ଶ୍ରୀମତୀ ସ୍ୱର୍ଣ୍ଣଲତା ମିଶ୍ର ଓ ଶ୍ରୀମତୀ କଲ୍ୟାଣି ବ୍ରହ୍ମା, ୰ ଡ଼ାକ୍ତର ଦୀନବନ୍ଧୁ ରଥଙ୍କର ଏକମାତ୍ର ପୁତ୍ର କେନ୍ଦ୍ର ସରକାରୀ କର୍ମଚାରୀ ଶ୍ରୀ ସତ୍ୟ ନାରାୟଣ ରଥ, ଦୁଇ ଭଗିନୀ ଶ୍ରୀମତୀ ଆଶାଲତା ମିଶ୍ର, ଶିକ୍ଷାବିତ୍ ଓ ଶ୍ରୀମତୀ ସ୍ନେହପ୍ରଭା ତ୍ରିପାଠୀ ଶିକ୍ଷାବିତ୍, ସ୍ୱର୍ଗତ କୃପାସିନ୍ଧୁ ରଥଙ୍କ ସୁପୁତ୍ର ବ୍ୟବସାୟୀ ଶ୍ରୀ ସଂଗ୍ରାମ କେଶରୀ ରଥ । ସ୍ୱର୍ଗତ ବାସୁଦେବ ରଥଙ୍କ ଚାରିପୁତ୍ର ମାଇନିଂ ଇଂଜିନିୟର ଓ ସାମ୍ବାଦିକ ଶ୍ରୀ ଦେବ ପ୍ରସାଦ ରଥ, ମେକାନିକାଲ ଇଂଜିନିୟର ତଥା ବିଦେଶରେ କାର୍ଯ୍ୟରତ ଶ୍ରୀ ବିଭୁ ପ୍ରସାଦ ରଥ, କ୍ୟାପ୍ଟେନ ମର୍ଚ୍ଚାଣ୍ଟ ନେଭି ଶ୍ରୀ ଅରୁଣ ପ୍ରସାଦ ରଥ ଏବଂ ବ୍ୟବସାୟୀ ଶ୍ରୀ ସଂଜୟ ପ୍ରସାଦ ରଥ । ତା'ପରେ ପରବର୍ତ୍ତୀ ପିଢ଼ି ନିଜନିଜ କର୍ମ କ୍ଷେତ୍ରରେ ଅବସ୍ଥାପିତ ଯେ କି ବୃହତ୍ ରଥ ପରିବାରର ଅନ୍ତର୍ଭୁକ୍ତ ।

୭୮, ସରକାରୀ ଫିସରୀ ଲେନ୍
ପୋ:ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୭୫୧୦୦୬

# ଡିଆ ଗ୍ରାମର ରଥ ପରିବାର

ଶ୍ରୀମତୀ କନକଲତା ରଥ

ମୋ ପୁତୁରା ଡ଼ାକ୍ତର ରବି ନାରାୟଣ ରଥର ଅନୁରୋଧରେ କିଛି ଲେଖିବାକୁ ମୁଁ ଚେଷ୍ଟା କରିଛି ।

ମୋର ପ୍ରାରମ୍ଭ ଜୀବନରେ ଏମିତି ଘଟଣା ଘଟିଥିଲା । ବିଶେଷତଃ ମୋ ଶ୍ୱଶୁରଙ୍କ ଗାଁ ସମ୍ବନ୍ଧରେ । ୧୯୪୬ ମସିହାରେ ମୁଁ ପ୍ରଥମ କରି ନିରାକାରପୁର ପାଖରେ ଥିବା ଗ୍ରାମ ଡ଼ିଆକୁ ଯାଇଥିଲି । ଗାଡ଼ିରୁ ଓହ୍ଲାଇ ଚାଲିକରି ଯିବା ରାସ୍ତା ଥିଲା । କିନ୍ତୁ ମୁଁ ବିଭାଘର ପରେ ପ୍ରଥମ ଯାଉଥିବାରୁ ସବାରୀର ବନ୍ଦୋବସ୍ତ ହୋଇଥିଲା । ମୁଁ ଚିତ୍ରରେ ସବାରୀ ଦେଖିଥିଲି । ବାସ୍ତବରେ ସବାରୀରେ ଯିବାକୁ ପଡ଼ିଲାରୁ କିପରି ଯିବି ଭାବି ମୁଁ ତା ଭିତରକୁ ଯିବାକୁ ଭୟ କରିଥିଲି । ଯାହା ହେଉ ସବାରୀରେ ବସିବା ପରେ ସବାରୀ ହଲିବାରୁ ମତେ ଭୟ ଲାଗିଥିଲା । ସବାରୀ ଦାଣ୍ଡପଟ ଅଗଣାରେ ରହିଲା । ଶାଶୁଙ୍କ ସହିତ ଅନ୍ୟ କେତେଜଣ ମତେ ଘର ଭିତରକୁ ନେଇଥିଲେ । ସମ୍ପୂର୍ଣ୍ଣ ଭିନ୍ନ ପରିବେଶ । ଗାଁ ସମ୍ବନ୍ଧରେ ମୋର ଧାରଣା ବହୁତ ସୀମିତ ଥିଲା ।

ଗୋଟାଏ ଖାନ୍‌ଦାନ୍ ପରିବାରରେ ମୁଁ ବୋହୂ ହୋଇଥିଲି । ବିରାଟ ଘର, ବିରାଟ ଅଗଣା ବାଡ଼ିପଟେ ଦାଣ୍ଡପଟେ ପୋଖରୀ ଧାନକୋଠି, ଅଗଣାରେ ଧାନ ଖଣି ଏସବୁ ମତେ ବିସ୍ମୟବିଭୂତ କରି ଦେଇଥିଲା ।

ଚାରି ଭାଇଙ୍କ ବଡ଼ ପରିବାର । ମୁଁ ଭାଇମାନଙ୍କ ଭିତରେ ସାନ ଭାଇଙ୍କର ପତ୍ନୀ ଥିଲି । ମୋ ଉପରେ ତିନି ଯାଆ ଥିଲେ, ସେମାନଙ୍କର ଛୋଟ ଛୋଟ ପିଲା ଥିଲେ । ମୁଁ ଯିବାବେଳେ ଘରେ ଶାଶୁଙ୍କ ଛଡ଼ା ଅନ୍ୟ କେହି ନଥିଲେ । ସମସ୍ତେ ନିଜ ନିଜ କର୍ମ ଭୂମିରେ ଥିଲେ । ମୁଁ ୪ ଦିନ ରହି ମୋ ସ୍ୱାମୀଙ୍କ କର୍ମଭୂମିକୁ ଫେରି ଆସିଥିଲି ।

ତା'ପରେ ମୁଁ ବହୁତ ଥର ଗାଁକୁ ଯାଇଛି । ଏକାନ୍ନବର୍ତ୍ତୀ ପରିବାର ହେତୁ ଶାଶୁଙ୍କ ପାଖରେ ଅନେକ ଲୋକ କାମ କରିବାକୁ ରହିଥିଲେ । ଦୁଇଦୁଇଟା ଝିଆରୀଙ୍କ ବିଭାଘର ଏକାଠି ଥିବାବେଳେ ଗାଁରେ ହୋଇଥିଲା । ସମସ୍ତେ ଏକା ମନରେ ହସ ଖୁସିରେ ପିଲା

ଦୁଇଟିକୁ ବିଦା କରିଥିଲେ । ତା'ପରେ କିଛିଦିନ ପରେ ଭାଇମାନେ ପୃଥକ ହୋଇଗଲେ । ମୋର ଜମିବାଡ଼ି ସମ୍ପତ୍ତି ଉପରେ ଆସକ୍ତି ନାହିଁ କହିଲେ ଚଳିବ । ତେଣୁ ମୁଁ ସେ ବିଷୟରେ କିଛି ଭାବେ ନାହିଁ ।

ସେତେବେଳେ ଗାଁକୁ ଯିବାକୁ ରାସ୍ତା ନଥିଲା । ବିଲର ହିଡ଼ ଉପରେ ଯିବା ଆସିବା ହେଉଥିଲା । ଥରେ ସେ ହିଡ଼ ଉପରେ ଯିବାବେଳେ ଭୁଲରେ ଅନ୍ୟ ହିଡ଼ ଉପରେ ଯାଇ ବିଲ ଭିତରକୁ ଖସି ପଡ଼ିଥିଲି । ଲୁଗାପଟା କାଦୁଅ ସରସର ହୋଇଯାଇଥିଲା । ଆଜି କିନ୍ତୁ କଂକ୍ରିଟ୍ ରାସ୍ତା ହୋଇଯାଇଛି । ଇଲେକଟ୍ରିକ୍‌ଲାଇଟ ଲାଗିଯାଇଛି । ସମସ୍ତଙ୍କ ଘରେ ବହୁତ ପରିବର୍ତ୍ତନ ହୋଇଯାଇଛି । କିନ୍ତୁ ଲୋକମାନଙ୍କ ଚିରିତ୍ରରେ ଜଟିଳ ମାନସିକତା ବଢ଼ିଯାଇଛି ।

ସବୁଠାରୁ ବଡ଼ କଥା ମୋ ବଡ଼ ଦେଢ଼ଶୁରଙ୍କର ସେ ଅଞ୍ଚଳର ଶିକ୍ଷାପ୍ରତି ବିଶେଷ ଧ୍ୟାନ ଦେବା । ତାଙ୍କରି ପ୍ରଚେଷ୍ଟାରେ ମାଇନର ସ୍କୁଲ, ହାଇସ୍କୁଲ ହେଲା । ସେ ହାଇସ୍କୁଲର ପ୍ରଧାନଶିକ୍ଷକ ଦାୟିତ୍ୱ ନେଇଥିଲେ । ସେତିକିରେ ତାଙ୍କର ଚେଷ୍ଟା ସୀମିତ ରହିନଥିଲା । ସେ ପୁନର୍ବାର ଉଚ୍ଚ ଶିକ୍ଷାପାଇଁ ଚେଷ୍ଟା ଆରମ୍ଭ କରିଥିଲେ । ବହୁ ପରିଶ୍ରମ ପରେ ନିରାକାରପୁରରେ କ୍ଷେତ୍ରବାସୀ କଲେଜ ପ୍ରତିଷ୍ଠା କରିଥିଲେ । ସମ୍ମାନର ମୋହ ନଥିବାରୁ ସେ ତାଙ୍କ ନାମ କେଉଁଠାରେ ବି ରଖିନଥିଲେ । ଏମିତିକି ସେ ବାଲୁଗାଁ ପର୍ଯ୍ୟନ୍ତ ତାଙ୍କ ନାଁରେ ନିଜର ପରିଚୟ ଦେଲେ ଶ୍ରୀ ଆନନ୍ଦ ରଥଙ୍କୁ ସମସ୍ତେ ଜାଣିଛନ୍ତି ବୋଲି ଶୁଣିଥିଲି । ଥରେ ଟ୍ରେନରେ ଗଲାବେଳେ ମୋ ପରିଚୟ ଜଣେ ଚାହିବାରୁ ମୁଁ ବଡ଼ ଭାଇନାଙ୍କ ନାଁରେ ପରିଚୟ ଦେଇଥିଲି । ସେ ବହୁତ ଖୁସୀ ହେଲେ ଓ ତାଙ୍କୁ ନିଜର କୃତଜ୍ଞତା ଜଣାଇଲେ । କିରାସିନି ଲାଇଟରେ ଜଳୁଥିବା ବତୀ ଷ୍ଟେସନକୁ ଆଲୋକିତ କରେ । ଏବେ ସେ ଦୃଶ୍ୟ ମାନସ ପଟ୍ଟରେ ଭାସି ଉଠେ । ସାନ ଦଦେଇଙ୍କର ନିରାକାରପୁରସ୍ଥିତ ବାସଭବନରୁ ଷ୍ଟେସନଟିର ବୁକିଂ ଅଫିସ୍ ନିକଟରେ ଅବସ୍ଥିତ । ଟ୍ରେନରେ ପୁରୀ ଆସିବାକୁ ଥରେ ଥରେ ଆମକୁ ଦୌଡ଼ି ଦୌଡ଼ି ଆସିବାକୁ ପଡ଼େ । ସେତେବେଳେ କୋଇଲା ଇଂଜିନ୍ ଚାଲୁଥିଲା । ଇଂଜିନିର ହର୍ଣ୍ଣ ବର୍ତ୍ତମାନର ଇଂଜିନର ହର୍ଣ୍ଣଠାରୁ ସଂମ୍ପୂର୍ଣ୍ଣ ଭିନ୍ନ ଥିଲା । ସମୟ ଚକ୍ରରେ ବର୍ତ୍ତମାନ ଷ୍ଟେସନରେ ଆକାରରୂପରେ ଅନେକ ପରିବର୍ତ୍ତନ ଘଟିଛି ।

୭୮, ସରକାରୀ ଫିସରୀ ଲେନ୍
ପୋ:ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୭୫୧୦୦୬



# ମୋ ନାନୀର ଶାଶୁଘର ଗାଁ -ଡିଆ (ନିରାକାରପୁର)

୰ଶ୍ରୀ ସତ୍ୟ ମହାପାତ୍ର

ମୋ ନାନୀ ମୋଠାରୁ ଦଶ ବର୍ଷ ବଡ଼ । ମତେ ଯେତେବେଳେ ତିନି କିମ୍ବା ଚାରି ବର୍ଷ ସେତେବେଳେ ତା'ର ବାହାଘର ହେଲା ପୁରୀ ଠାରେ । ଆମେ ସବୁ କଟକ ଘର ଛାଡ଼ି ନାନୀର ବାହାଘର ପାଇଁ ପୁରୀ ଯାଇଥିଲୁ । ମନ୍ଦିରର ପଶ୍ଚିମ ଦ୍ୱାର ...ଜଣେ ସମ୍ପର୍କୀୟଙ୍କ ଘରେ ବାହାଘରର ଆୟୋଜନ ହୋଇଥାଏ । ସେଇଠି ମୁଁ ଆମ ଭିଣୋଇ ୰ ବାସୁଦେବ ରଥଙ୍କୁ ଦେଖିଥିଲି ପ୍ରଥମେ । ସେତେବେଳେ ବି ତାଙ୍କ ମୁହଁରେ ଅନାବିଳ ସରଳ ହୃଦୟର ମନଲୋଭା ହସ ମୁଁ ଦେଖିଛି । ବାହାଘର ବେଳେ ଶଳା ଭିଣୋଇଙ୍କର ପାଦ ଧୋଇ ଦେବାର ଗୋଟିଏ ବିଧି ଅଛି । ମୋ ବଡ଼ ଭାଇ ସେଠାରେ ସେତେବେଳେ ପାଖରେ ନଥିବାରୁ ମତେ ସେ କାର୍ଯ୍ୟଟି କରିବାକୁ ପଡ଼ିଥିଲା । ନାନୀର ବାହାଘରରେ ମତେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ମିଳିଥିବାରୁ ମୁଁ ଭାରି ଖୁସିଥିଲି ।

ଏହାପରେ ନାନୀଙ୍କୁ ନେଇ ଆମେ ସମସ୍ତେ କଟକ ଆସିଲୁ । ନାନୀର ଶାଶୁଘର ଯିବାର ହେଲା । ମୋର ବଡ଼ଭାଇ ତା ସାଙ୍ଗରେ ଯାଇଥିଲେ । ସେମାନେ ରେଳଗାଡ଼ିରେ ପୁରୀ ଯାଇ ରାମଚଣ୍ଡି ସାହିରେ ପହଞ୍ଚିଲେ । ତା'ର ଦେଢ଼ଶୁର ୰ ଦୀନବନ୍ଧୁ ରଥଙ୍କ ରାମଚଣ୍ଡି ସାହିସ୍ଥିତ ଘରେ ରହିଲେ ।

ପରେ ମୋର ଭିଣୋଇ ୰ ବାସୁଦେବ ରଥଙ୍କ ସାଙ୍ଗରେ ନାନୀ ରେଳଗାଡ଼ିରେ ଯାଇ ନିରାକାରପୁର ଷ୍ଟେସନରେ ପହଞ୍ଚିଲା । ସେଠାରୁ ଡ଼ିଆ ଗାଁକୁ ଯିବା କଥା । କିନ୍ତୁ ଷ୍ଟେସନରୁ ତା'ର ଶାଶୁଘର ଗାଁ ଡ଼ିଆ ପର୍ଯ୍ୟନ୍ତ ରାସ୍ତା ନଥିଲା । ଧାନ ବିଲ ହିଡ଼ ଉପରେ ସବାରୀରେ ବସି ତାକୁ ଡ଼ିଆ ଗାଁକୁ ଯିବାକୁ ପଡ଼ିଥିଲା । ସବାରୀ ବାହକମାନେ ସବାରୀ ବୋହିଲା ବେଳେ ଗୋଟେ ପ୍ରକାର ଶବ୍ଦ କରି ମିଳିତ ଭାବରେ ଗୋଟେ ଗୀତ ଗାଉଥାନ୍ତି । କଟକରେ ବଢ଼ିଥିବା ମୋ ନାନୀ ସେ ସବାରୀବାଲାଙ୍କ ଗୀତରେ ଡ଼ରି ଯାଇଥିଲା । ଆମେ ସବୁ କଟକରେ ରହୁଥିଲୁ । ତେଣୁ ସବାରୀ ଓ ପାଲିଙ୍କି କ'ଣ ଦେଖି ନଥିଲୁ । ମୁଁ ହାଇସ୍କୁଲ ଛାତ୍ର ଥିବା ବେଳେ ମୋର ଭିଣୋଇ ବାସୁଦେବ ରଥ ଓ ନାନୀ ସାଙ୍ଗେ ସାଙ୍ଗେ ନିରାକାରପୁର

ଏବଂ ଡିଆ ଗାଁକୁ ଯାଇଥିଲି । ତା'ର ଦେଢ଼ଶୁର ୰ କୃପାସିନ୍ଧୁ ରଥ ନିରାକାରପୁରରେ ରହୁଥିଲେ । ପ୍ରଥମେ ତାଙ୍କ ଘରେ ରହି ମୁଁ କଙ୍କଡ଼ା ଝୋଳ ଖାଇଥିଲି । ନାନୀର ଉପର ଯାଆ ଭାରି ସ୍ନେହୀ । ଖାଇବାକୁ ଦବା ଓ ଆନ୍ତରିକତାର ସହ ପରଷିବା ତାଙ୍କର ଏକ ବିଶିଷ୍ଟ ଗୁଣ ଥିଲା । ପରେ ଧାନ ବିଲ ହିଡ଼ ଉପରେ ଚାଲି ଚାଲି ମୁଁ ଡ଼ିଆ ଗାଁକୁ ଯାଇଥିଲି । ଅତି ସୁନ୍ଦର ପରିଷ୍କାର ଗାଁଟିଏ । ସମସ୍ତେ ସମସ୍ତଙ୍କର ସମ୍ପର୍କୀୟ । ତେଣୁ ମୁଁ ସମସ୍ତଙ୍କ ଘରକୁ ବୁଲିଯାଇଛି ।

ନାନୀର ସଭାବଡ଼ ଦେଢ଼ଶୁର ୰ ଆନନ୍ଦ ରଥ ଶିକ୍ଷକ ଥିଲେ । ସେ ଅଞ୍ଚଳର ଲୋକମାନେ ତାଙ୍କୁ ଭାରି ଭଲପାଉଥିଲେ । କଂଗ୍ରେସ ଦଳ ତାଙ୍କୁ ରଣପୁର ଆସନ ପାଇଁ ବିଧାନ ସଭାକୁ ପ୍ରାର୍ଥୀ କରିବାକୁ ପ୍ରାୟ ସ୍ଥିର କରିଥିଲା । ସେ ନିର୍ବାଚନରେ ଛିଡ଼ା ନ ହୋଇ ନିରାକାରପୁର ହାଇସ୍କୁଲର ଉନ୍ନତି ପାଇଁ ଲାଗି ପଡ଼ିଲେ । ତାଙ୍କରି ଉଦ୍ୟମରେ ନିରାକାରପୁର କଲେଜ ମଧ୍ୟ ହେଲା ।

ନାନୀ ଆସି କଟକରେ ରହିଲା ଚାଉଳିଆ ଗଞ୍ଜରେ । ଭିଣୋଇ ୰ ବାସୁଦେବ ରଥ ରେଳବାଇରେ ଚାକିରୀ କରୁଥିଲେ । ତା'ପରେ ଝାଞ୍ଜିର ମଙ୍ଗଳାରେ ଘର କରି ସେମାନେ ରହିଲେ । ଆମେ ୧୯୪୭ରେ ଆଠଗଡ଼ ଗଲୁ । ୧୯୫୫ରେ ମାଟ୍ରିକ୍ ପାଇ ପରେ ମୁଁ ପୁରୀରେ ନାନୀ ଘରେ ରହି କଲେଜରେ ନାଁ ଲେଖେଇଲି । ପରେ ପାଥେରପୁରୀ ହଷ୍ଟେଲ୍ ଓ କକେଇଙ୍କ ଘରେ ରହି ମୁଁ ଆଇ.ଏ.ପାଶ କଲି । ନାନୀ ସାଙ୍ଗରେ ମୋର ଘନିଷ୍ଠ ସମ୍ପର୍କ ଥିଲା । ସେ ମତେ ସବୁଠାରୁ ବେଶୀ ଭଲ ପାଏ ବୋଲି ମୁଁ ଭାବେ । ସେ ମତେ ଘଣ୍ଟା ଘଣ୍ଟା ଧୈର୍ଯ୍ୟ ଧରି ଗପବହି ଉପନ୍ୟାସ ଇତ୍ୟାଦି ପଢ଼ିବାକୁ ଉତ୍ସାହିତ କରିଛି । ଭିଣୋଇ ୰ ବାସୁଦେବ ରଥ ଶେଷ ପର୍ଯ୍ୟନ୍ତ ସେପରି ନିର୍ମାୟା ସୁଲଭ ହସ ହସ ମୁହଁରେ ସମସ୍ତଙ୍କୁ ଦେଖୁଥିଲେ । ଦିନଲିପି ଖବର କାଗଜର ସେ ପ୍ରକାଶକ ଓ ମୁଦ୍ରାକର ଥିଲେ ।

ନାନୀ ଅଛି । ମୋର ମଧ୍ୟ ବୟସ ହେଲାଣି । ମୋର ଦି ଭାଇ ଓ ଭଉଣୀ ବି ଚାଲି ଗଲେଣି ଆର ପାରିକୁ । ଆମେ ଦି ଜଣ ଅଛୁ ଏଇ ଭୁବନେଶ୍ୱରରେ । ନାନୀ ଘରକୁ ଗଲେ ଡ଼ିଆ ଗାଁ କଥା ମନେ ପଡ଼େ । ନିରାକାରପୁର ଏବେ ଗୋଟିଏ ଛୋଟ ସହର ହୋଇଗଲାଣି । ଡ଼ିଆକୁ ନିରାକାରପୁର ଠାରୁ ଭଲ ରାସ୍ତା ହେଲାଣି । କାର୍ଯ୍ୟ ବ୍ୟସ୍ତତା ଯୋଗୁଁ ମୁଁ ଆଉ ନିରାକାରପୁର ଯାଇପାରିନି ।

ନାନୀର ଦ୍ୱିତୀୟ ବଡ଼ ଦେଢ଼ଶୁର ଵ ଦୀନବନ୍ଧୁ ରଥ ପୁରୀ ତଥା ଓଡ଼ିଶାର ବଡ଼ ହୋମିଓପାଥି ଡ଼ାକ୍ତର ଥିଲେ । ସେ ହୋମିଓପାଥି ଉପରେ ଓଡ଼ିଆରେ ୪ଖଣ୍ଡ ଉପାଦେୟ ବହି ଲେଖିଛନ୍ତି । ସେ ବହି ହଜାର ହଜାର ସଂଖ୍ୟାରେ ବିକ୍ରୀ ହୋଇଛି । ସେ ମୋ ଭିଣୋଇଙ୍କର ବଡ଼ ଭାଇ ଓ ଅଭିଭାବକ ଥିଲେ । ମତେ ସେ ସବୁବେଳେ ସ୍ନେହ ଦୃଷ୍ଟିରେ ଦେଖୁଥିଲେ । ପୁରୀ ଦୋଳ ମଣ୍ଡପ ସାହି ଆରମ୍ଭରେ ତାଙ୍କର ଗୋଟିଏ ହୋମିଓପାଥି ଚିକିତ୍ସାଳୟ ଥିଲା । ଔଷଧ ଆଣିବାକୁ ମୁଁ ତାଙ୍କ ପାଖକୁ ଅନେକ ଥର ଯାଇଛି ।

ଡ଼ିଆକୁ ଗଲାବେଳେ ମୁଁ ନାନୀର ଶାଶୁଙ୍କ ସହିତ ମିଶିବାର ସୁଯୋଗ ପାଇଥିଲି । ତାଙ୍କ ପରି ଏତେ ଭଲ ମଣିଷ ଆଜି ବି ଜଣଙ୍କୁ ମୁଁ ଦେଖି ନାହିଁ । ବ୍ୟସ୍ତତା ଭିତରେ ବି ସବୁବେଳେ ତାଙ୍କର ହସ ଲାଗି ରହିଥାଏ । ମୁଁ ତାଙ୍କୁ କଣ ଡ଼ାକିବି ବୋଲି ଜାଣି ନପାରି ଶାଶୁ ବୋଲି ଡ଼ାକୁଥିଲି । ମୁଁ ତାଙ୍କୁ ଶେଷଥର ପୁରୀରେ ଦେଖିଥିଲି । ତାଙ୍କର ଦେହ ଅତ୍ୟଧିକ ଖରାପ ବୋଲି ମୁଁ ପୁରୀ ଯାଇଥାଏ । ପୁରୀ ରାମଚଣ୍ଡି ସାହିରେ ତାଙ୍କୁ ଦେଖି ଷ୍ଟେସନର ରେଳବାଇ କଲୋନୀରେ ନାନୀର ଘରଠାରେ ରହିଲି । ସେଇଠି ସେଦିନ ରାତିରେ ମତେ ଭାରି ଜ୍ୱର ହେଲା । ସେଇ ରାତିରେ ଶାଶୁଙ୍କ ଦେହାନ୍ତ ହୋଇଗଲା ବୋଲି ଖବର ପାଇଲି । ଆଜି ଏ ବିଷୟରେ ଲେଖିବାବେଳେ ତାଙ୍କର ହସ ହସ ମୁହଁ ମତେ ସ୍ପଷ୍ଟ ଦେଖାଯାଉଛି । *

୪୭,ଭି.ଆଇ.ପି.ଏରିଆ,
ଆଇ.ଆର୍.ସି.ଭିଲେଜ, ଭୁବନେଶ୍ୱର-୧୫
ମୋ.୯୪୩୭୭-୬୩୫୫୨

(* ଇତିମଧ୍ୟରେ ସତ୍ୟ ମହାପାତ୍ର (ମାମୁଁ)ଙ୍କର ଦେହାନ୍ତ ହୋଇସାରିଛି । ଆମେ ତାଙ୍କ ମହାନ୍ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଦେଉଛୁ - ସମ୍ପାଦନା ମଣ୍ଡଳୀ ।)

# ନନାଙ୍କ ସମ୍ପର୍କରେ ଅଳ୍ପ କିଛି

**ସୁଭାଷ ଚନ୍ଦ୍ର ରଥ**

ମୋର ଜନ୍ମ ୧୪.୦୭.୧୯୪୩। ନନା ସେତେବେଳେ ବୋଲଗଡ଼ ହାଇସ୍କୁଲର ହେଡ଼ମାଷ୍ଟର ଥାନ୍ତି । ମୋର ହେତୁ ହେଲା ବେଳକୁ ଧରି ନିଆଯାଉ, ନନାଙ୍କୁ ବୟସ ପ୍ରାୟ ୫୩ ହୋଇଥିବ, ସେତେବେଳେ ତାଙ୍କର ମାନସପୁତ୍ର ନିରାକାରପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ । ସେହି ସମୟ ଓ ପରବର୍ତ୍ତୀ ସମୟର ବିଷୟରେ କିଛି ଉଲ୍ଲେଖ ।

୦୨/୦୬/୧୯୮୮ରେ ନନାଙ୍କର ସ୍ୱର୍ଗାରୋହଣ ହୁଏ । ତା'ର ୭/୮ ଦିନ ଆଗରୁ ନନା କ୍ୟାପିଟାଲ୍ ହସପିଟାଲରେ କୋମା (coma)ରେ ଥାନ୍ତି । ସାନ କକେଇ ସେତେବେଳେ "ଦିନଲିପି" ସମ୍ବାଦପତ୍ରରେ କାମ କରୁଥାନ୍ତି । ମୁଁ ବାରିପଦାରେ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ ଥାଏ । ବାରିପଦାର ଦିନଲିପିର ସାମ୍ବାଦିକଙ୍କ ଜରିଆରେ ନନାଙ୍କ ଅସୁସ୍ଥତା ବିଷୟରେ ଶୁଣି ଭୁବନେଶ୍ୱରରେ ପହଞ୍ଚିଲି । କିନ୍ତୁ ନନାଙ୍କ ମୁହଁରୁ ଆଉ କିଛି ଶୁଣିବା ସମ୍ଭବ ନଥିଲା । ଜାନକୀବାବୁ ସେତେବେଳେ ମୁଖମନ୍ତ୍ରୀ ଥାଆନ୍ତି । ନନାଙ୍କର ଅସୁସ୍ଥତା ଖବର ପାଇ ମୁଖ୍ୟମନ୍ତ୍ରୀ ଆସି ଶେଷ ଦର୍ଶନ କରିଯାଇଥାନ୍ତି । କକେଇ ପୁଅ ଭାଇ ସଂଗ୍ରାମ (ବାବୁ) ଓ ମୁଁ ମିଶି ସି.ଡ଼ି.ଏମ୍.ଓ ଙ୍କୁ ସାକ୍ଷାତ କରିବାରେ ସେ କହିଲେ ୮୮ ବର୍ଷ ବୟସରେ ଅପରେସନ୍ କରିବା ସମ୍ଭବ ହେବନି । ମସ୍ତିଷ୍କ ଭିତରେ ଯଦି ରକ୍ତକ୍ଷରଣ ବନ୍ଦ ହୋଇଯାଏ କିମ୍ବା ଯଦି କିଛି miracle ହୁଏ ତେବେ ଯାହାହେବ । ନଚେତ୍ ଆମକୁ କେବଳ ୨୪ଘଣ୍ଟାକୁ ୨୪ଘଣ୍ଟା watch and wait କରିବା ଛଡ଼ା ଆଉ ବିଶେଷ କିଛି ଚିକିତ୍ସା କରିବାର ନାହିଁ । ସାନଭାଇ ରବି ସେତେବଳେ ଗୟାରେ P&T ହସ୍ପିଟାଲରେ ସିନିୟର ମେଡ଼ିକାଲ ଅଫିସର ଥାଏ । ସେ ମଧ୍ୟ ଗୟାରୁ ବାରମ୍ବାର ଫୋନରେ C.D.M.Oଙ୍କ ସହ କଥାବାର୍ତ୍ତା କରୁଥାଏ । ନନାଙ୍କର Oxygen ଚାଲୁ ରଖାଯାଇଥାଏ । କଫ କାଢ଼ିବା ପାଇଁ ମଝିରେ ମଝିରେ suction କରାଯାଇଥାଏ । ବୋଧହୁଏ ନନାଙ୍କର ଶଯ୍ୟାଶାୟୀ ହେବାର ଅଷ୍ଟମ ଦିନ ଥିଲା । ନନ୍ଦବାବୁ ନନାଙ୍କୁ ଦର୍ଶନ କରିବା ପାଇଁ ଆସି କହିଲେ- ବିଶ୍ୱନାଥବାବୁ, ଆପଣମାନେ ଏ କ'ଣ କରିଛନ୍ତି ? ଆତ୍ମା ପରମାତ୍ମା ସାଙ୍ଗେ କେବେଠୁ ମିଶିବାକୁ ଚାହିଁଲାଣି । ଆପଣମାନେ ଜୋର୍

କରି କାହିଁକି ଅଟକାଇଛନ୍ତି ? ଛାଡ଼ି ଦିଅନ୍ତୁ ଇତ୍ୟାଦି ତାଙ୍କରି ପରାମର୍ଶରେ ଅଷ୍ଟମ ସ୍କନ୍ଧ ଭାଗବତ ମଗାଗଲା ଓ କଲ୍ୟାଣୀ (ସାନ ଭଉଣୀ) ଅଳ୍ପ କେତେ ପୃଷ୍ଠା ପଢ଼ିଥାଏ । ଭାଇନା ଟିକିଏ ଧୂପ ଦୀପ ଦେଇ ପାଟିରେ ଗଙ୍ଗାଜଳ ଟିକିଏ ଦେବାପରେ ହଠାତ୍ ଶ୍ୱାସକ୍ରିୟା ବନ୍ଦ ହୋଇଗଲା । ନନ୍ଦବାବୁ ଜଣେ ଉଚ୍ଚପଦସ୍ଥ ଅଫିସର ଥିଲେ ବି ପାରାୟଣରେ ଶ୍ରୋତାମାନଙ୍କୁ ବିମୁଗ୍ଧ କରୁଥିଲେ ଓ ଜଗନ୍ନାଥଙ୍କର କରୁଣାରୁ କିଛି ଅଲୌକିକତା ଥିଲା । ନଚେତ୍ ପ୍ରଶ୍ୱାସ ଚାଲୁଥିବା ବେଳେ ଏ ପ୍ରକାର ଉପଦେଶ ତାଙ୍କଠାରୁ ଆସିନଥାନ୍ତା । ନନା ତ ବଞ୍ଚୁଥିଲେ ଗାଁମାନଙ୍କର ଓ ସମାଜର ମଙ୍ଗଳପାଇଁ । ଗାଁ ଥିଲା ତାଙ୍କ ପାଇଁ ସ୍ୱର୍ଗ । ତେଣୁ ଗାଁର ଶ୍ମଶାନ ତାଙ୍କ ପାଇଁ ଥିଲା 'ସ୍ୱର୍ଗଦ୍ୱାର । ସେଥିପାଇଁ ନନାଙ୍କୁ ସେହି ରାତିରେ ଗାଁକୁ ଆଣି ସର୍ବସାଧାରଣଙ୍କ ଦର୍ଶନ ପାଇଁ ଦିନ ପ୍ରାୟ ୧୦/୧୧ଟା ପର୍ଯ୍ୟନ୍ତ ରଖି ବିରାଟ ପଟୁଆରରେ ଶ୍ମଶାନକୁ ନେଇ ଶେଷ କାର୍ଯ୍ୟ ସମ୍ପାଦନ କରାଗଲା । ଅନେକ ଲୋକ ଯଥା ସ୍ୱପ୍ନେଶ୍ୱର ଦାଶ, ହରି ପ୍ରଧାନ ଓ ଆହୁରି ଅନେକ ଶ୍ମଶାନରେ ମଧ୍ୟ ଆସି ନନାଙ୍କର ଶେଷ ଦର୍ଶନ କରିଥିଲେ ।

**ଅଲୌକିକ ଘଟଣା:**

ଦେହାନ୍ତର ୨ୟ ବା ୩ୟ ଦିନର କଥା । ହଠାତ୍ ଜଣେ ସନ୍ୟାସୀ ଆସି ଘରେ ଉପସ୍ଥିତ ହେଲେ । କହିଲେ-''ଆତ୍ମାର ସଦ୍‌ଗତି ପାଇଁ ଘରେ ଆତ୍ମୀୟମାନେ ଅଯଥା କାନ୍ଦବୋବାଳି ନକରିବା ଉଚିତ୍ ଏବଂ କ'ଣ ପାଇଁ ତାହା ଆବଶ୍ୟକ- ଚୁମ୍ବକରେ ବୁଝାଇଦେଲେ । ସେ ସନ୍ୟାସୀଙ୍କ ପାଇଁ ଚାହା କପଟିଏ ବରାଦ କରି ୨/୩ ମିନିଟ୍ ମଧ୍ୟରେ ମୁଁ ଦାଣ୍ଡ ପଟ ଅଗଣାକୁ ଆସିଲା ବେଳକୁ ଦେଖିଲି- ସେ ସନ୍ୟାସୀ ଆଉ ନାହାନ୍ତି । ଗାଁରେ ଅନେକ ଲୋକଙ୍କୁ ସେଭଳି ଜଣେ ସନ୍ୟାସୀଙ୍କୁ ଦେଖିଛନ୍ତି କି ବୋଲି ପଚାରିବାରେ- ଜଣେ ହେଲେ କିଏ ତାଙ୍କୁ ଦେଖିଥିବା କଥା କହିଲେନି । ବୁଝିହେଲାନି କିଏ ସେ ମହାତ୍ମା ଓ ହଠାତ୍ କୁଆଡ଼େ ଉଭାନ ହୋଇଗଲେ । ନନାଙ୍କର ଦଶାହ ମଧ୍ୟରେ ଦେଖାଗଲା । ସବୁଦିନ ପ୍ରାୟ ଝିପିଝିପି ବର୍ଷା ଲାଗି ରହିଥାଏ । ସବୁ ଦିନ ତ କିଛି ଲୋକଙ୍କର ଭୋଜନ ଗାଁ ଦାଣ୍ଡକୁ କାଦୁଅ ମୁକ୍ତ କରିବା ପାଇଁ ବାଲି କେତେ ଗାଡ଼ି ଆଣି ରଖାଯାଇଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା- ଯେଉଁଦିନ ଅର୍ଥାତ୍ ୪,୭ ୯ ଓ ୧୦ଦିନ ମାନଙ୍କରେ ମହାପ୍ରସାଦ ସେବନର ଅଧ ଘଣ୍ଟା ବା ଘଣ୍ଟାଏ ଆଗରୁ ବର୍ଷା ଛାଡ଼ିଯାଏ ଓ ପ୍ରସାଦ ସେବନପରେ ପୁଣି ବର୍ଷା ହୁଏ । ସ୍ୱତଃପ୍ରବୃତ୍ତ ଭାବେ ବିଭିନ୍ନ ଗ୍ରାମରୁ ସଂକିର୍ତ୍ତନ ମଣ୍ଡଳୀ ଆସି ସଂକିର୍ତ୍ତନ କରୁଥାଆନ୍ତି । ବାୟୁମଣ୍ଡଳ ସତେ

ଯେପରି ଆଧ୍ୟାତ୍ମିକତାରେ ପରିବର୍ତ୍ତନ ହୋଇଥିଲା ଭଳି ଲାଗୁଥାଏ । ଭୋକ ଶୋଷ ଜାଣି ହଉନଥାଏ । କିନ୍ତୁ ଆମ ଚାରିଭାଇ ଓ ଭଉଣୀମାନଙ୍କୁ କାହାରିକୁ ଟିକିଏବି ଦେଖାଦେଲେନି । କିନ୍ତୁ ଲୁପୁ (ଭାଇନାଙ୍କ ୨ୟ ପୁତ୍ର) ହଠାତ୍ କାନ୍ଦିକରି ଦୌଡ଼ି ଆସିଲା । ଦିନବେଳା କଥା । ବୋଧହୁଏ ୪ର୍ଥ କିମ୍ବା ୫ମ ଶ୍ରେଣୀରେ ପଢୁଥାଏ । କହିଲା- ବାପା (ଆମ ନନା) ଆସିଥିଲେ । ଧୋତି ପିନ୍ଧିଥାନ୍ତି ଓ ବୋଷାଡ଼ାଟିଏ ଦେହରେ ପକାଇଥାନ୍ତି । ହାତରେ ଗୋଟିଏ ଛୋଟିଆ ଆଟିକା ଓ ତା'ମଧ୍ୟରେ କ୍ୟାଲେଣ୍ଡରକୁ ଗୁଡ଼ାଇ ରଖିଲା ଭଳି କ'ଣ ଗୋଟାଏ କାଗଜ ଥାଏ । କଥାବର୍ତ୍ତାର ସାରକଥା ''ସବୁମନ ଏକ ହେଲେ- ସବୁ ଠିକ୍ ହୋଇଯିବ'' ସେ ଦିନର ୮/୯ ବର୍ଷର ପିଲା ଲୁପୁ ଜରିଆରେ ହୁଏତ ନନାଙ୍କର ଆମମାନଙ୍କ ପାଇଁ ତାହା ଥିଲା ଶେଷ ଉପଦେଶ । ଏ ବାବଦ କଥା ଏତିକିରେ ରହୁ ।

**ନନାଙ୍କର ଦିନ ଚର୍ଯ୍ୟା:**

ସକାଳୁ ଉଠିକରି ଖଟ ଉପରେ ଥାଇ ପ୍ରଥମେ ସ୍ୱସ୍ତି ପ୍ରଜାଭ୍ୟଂ ପରିପାଳୟନ୍ତୁ..., ବ୍ରହ୍ମମୁରାରୀ ତ୍ରିପୁରାନ୍ତକାରୀ... ଇତ୍ୟାଦି କେତୋଟି ଶ୍ଳୋକ ଆବୃତ୍ତି ପରେ ମୁହଁ ନଧୋଇ ଗୁହାଳ ଘରକୁ ଯାଇ ମୁଣ୍ଡିଆ ମାରି ଗାଇମାନଙ୍କର ଦେହରେ ହାତମାରି ଗୋବର କେତେ ଲୁଣ୍ଡା ସଫା କରିବା ପରେ ଆସି ଦାନ୍ତ ମଜା କରି, ପାଣି ଗିଲାସଟି ପିଇବା ପରେ ଆରମ୍ଭ ହୋଇଯାଏ ଚା ପାନ ପର୍ବ । ସ୍କୁଲକୁ ଯିବା ପୂର୍ବରୁ ବୋଧହୁଏ ୫/୬ କପ୍ ଚାପାନ ହୋଇଯାଏ ସବୁବେଳେ ଚିନ୍ତା ଅନ୍ୟମାନଙ୍କ ପାଇଁ । ସ୍କୁଲକୁ ଯିବା ପୂର୍ବରୁ କେହି ନା କେହି ତ ନିଶ୍ଚୟ କିଛି ସମସ୍ୟା ନେଇ ଆସିଥାନ୍ତି । ସେଇ ସବୁ କଥାରେ କିଛି ସମୟ ଦେବାଟା ଏକ ଡ଼େରି ମଧ ହୋଇଥାଏ । କିନ୍ତୁ ସେଥିପାଇଁ ଚିନ୍ତାନାହିଁ । କାରଣ ସିଏତ ନିଜ କଥାରେ ସମୟ ଅତିକ୍ରାନ୍ତ କରିନଥାନ୍ତି । ସ୍କୁଲ ପାଇଁ କିମ୍ବା ସ୍ଥାନୀୟ ଲୋକଙ୍କର ସମସ୍ୟା ପାଇଁ ଆବଶ୍ୟକ ମତେ ସମୟ ଦେବାରେ କୁଣ୍ଠା କରନ୍ତି ନାହିଁ । ସ୍କୁଲରେ ମଧ ଘଣ୍ଟା ଦେଖି ପାଠ ପଢ଼ାଇବା ଅଭ୍ୟାସ ତାଙ୍କର ନଥିଲା । ଇଂରାଜୀ ତାଙ୍କର ସବୁଠୁ ପ୍ରିୟ ବିଷୟ । ଖଦୀ ପିନ୍ଧା ମଣିଷ । ଭାବ ବିହ୍ୱଳ ହୋଇ ପାଠ ପଢ଼ାନ୍ତି । ଗୋଟିଏ ପିରିୟଡ଼ ଯାଇ ଆଉ ଗୋଟିଏ ପିରିୟଡ଼ରେ ଅଧା ହୋଇଯାଏ, ଅନ୍ୟ ଶିକ୍ଷକ ଆସି ଉଣ୍ଡି ଦେଇ ଚାଲିଯାଆନ୍ତି । କିନ୍ତୁ ବିଷୟବସ୍ତୁ ନସାରି ସେ ଶ୍ରେଣୀ ଛାଡ଼ନ୍ତି ନାହିଁ । ହେଡ୍‌ମାଷ୍ଟର ହିସାବରେ ସ୍କୁଲ ପରିଦର୍ଶନ (Routine Go Round) ସମୟରେ ଯଦି କୌଣସି ଶ୍ରେଣୀରେ ଶିକ୍ଷକ ନଥିବାର ଦେଖନ୍ତି, ତେବେ ସେ ଶ୍ରେଣୀକୁ ଯାଇଁ କେଉଁ

ବିଷୟ ଥିଲା ପିଲାମାନଙ୍କଠାରୁ ବୁଝି ସେହି ବିଷୟରେ ପାଠ ପଢ଼ାଇବାର ଦକ୍ଷତା ଥିବା ଅନେକଥର ଦେଖିବାକୁ ମିଳନ୍ତି । ଅର୍ଥାତ୍ କେବଳ ଇଂରାଜି ନୁହେଁ, ଯେକୌଣସି ବିଷୟ ପଢ଼ାଇବାର ଦକ୍ଷତା ରଖିଥିଲେ ସେ । Key Book Followe କରିବାକୁ କିମ୍ୱା ଟ୍ୟୁସନ୍ କରିବାର ଘୋର ବିରୋଧୀ ଥିଲେ ନନା । ଯଦି କୌଣସି ଶ୍ରେଣୀ, ବିଶେଷ କରି ଏକାଦଶ ଶ୍ରେଣୀର କୌଣସି ବିଷୟ ପଢ଼ାସରିନଥାଏ, କିମ୍ୱା କୌଣସି ବିଷୟରେ ଛାତ୍ରମାନେ ଦୁର୍ବଳ ଥିବା ଅନୁଭବ କରୁଥିଲେ, ତେବେ ପରୀକ୍ଷା ପୂର୍ବରୁ ମାଗଣାରେ କୋଚିଂ କ୍ଲାସ କରାଉଥିଲେ । ଘରୁ ଟେବୁଲ ବେଞ୍ଚ ଆଦି ଯୋଗାଇ ଆମ ବଗିଚାରେ କୋଚିଂ କ୍ଲାସ କରିବା କଥା ମୋର ସ୍ପଷ୍ଟ ମନେ ଅଛି । ସ୍କୁଲର କିପରି ଭଲ ରେଜଲ୍ଟ ହେବ, ସେଥିପାଇଁ ସହକାରୀ ଶିକ୍ଷକମାନଙ୍କ ସହିତ ପରାମର୍ଶ କରି ଏସବୁ ବନ୍ଦୋବସ୍ତ କରାଯାଉଥିଲା । ଏଥିପାଇଁ କୌଣସି ଶିକ୍ଷକ କିଛି ଅଧିକ ପାରିଶ୍ରମିକ ପାଉନଥିଲେ । ସଂନ୍ଧ୍ୟାରେ ଘରକୁ ଫେରିଲା ପରେ ମଧ୍ୟ କାମ ସରେନି । ଗାଁ ଦାଣ୍ଡରେ ଦୁଇଟି ଚକାପଥର (ଚାନ୍ଦେନୀ) ଥାଏ । କେଉଁ ଦିନ କେଉଁଠି ବସା ହେବ, ଆଲୋଚନା ଇତ୍ୟାଦି ହେବ କିଛି ସ୍ଥିର ନଥାଏ । ଯେଉଁଠି ସିଏ ବସନ୍ତି ସେଠି ଆସର ଜମେ । ଘରୁ ଚା ଓ ପାନ ମଗାଯାଏ । ଟେବୁଲ୍‌ରେ ଚା ପଠାଯିବ । ଆସର ସରିବାର ସମୟ ସ୍ଥିର ନଥାଏ । ଘରକୁ ପେରିଲାବେଳକୁ ସାଙ୍ଗରେ କିଏ ନା କିଏ ଜଣେ ଅଧେ ଆସିଥାନ୍ତି । ତାଙ୍କ ସାଙ୍ଗରେ ରାତିରେ ଯାଇ ସ୍ନାନ କରାଯିବ ବଡ଼ ପୋଖରୀରେ । ରାତି ୧୧/୧୨ ପୂର୍ବରୁ ଶୋଇବାର ପ୍ରଶ୍ନ ନଥାଏ । ଏହାଥିଲା ତାଙ୍କର ଦୈନନ୍ଦିନ ଜୀବନ ଚର୍ଯ୍ୟା ।

**ଏଣୁତେଣୁ**

ପିଲାଦିନେ ନନାଙ୍କର କାର୍ଯ୍ୟ ଓ ତା'ର ମହତ୍ୱ ବୁଝି ହେଉନଥିଲେ ହେଁ - ଏବେ ସେସବୁ ଚିନ୍ତା କଲେ ମନେ ହୁଏ କେତେ ମହାନ ଥିଲେ ଆମ ନନା । ଟଙ୍କା ପଇସା, କୋଠାବାଡ଼ି, ଗାଡ଼ି ଘୋଡ଼ା ଆଦି ତାଙ୍କୁ ପ୍ରଲୁବ୍ଧ କରିନଥିଲା । କାରଣ ଜୀବନଦର୍ଶନ ତାଙ୍କର ଥିଲା ସତ୍ୟ ଉପରେ ଆଧାରିତ । ଅର୍ଥାତ୍ କିଛି ନେଇକରି ଆସିବେ କି କିଛି ନେଇକରି ଯିବାନି । ଯଦି ପାରିବ ସମାଜର କଲ୍ୟାଣ ପାଇଁ କିଛି କର । ତାହାହିଁ ତୁମକୁ ସ୍ମରଣୀୟ କରି ରଖିପାରେ । ନନା ଥିଲେ ଗୋଟିଏ ବଣମଲ୍ଲୀ । ତାଙ୍କର ଅଗଣିତ ଛାତ୍ରଛାତ୍ରୀ ଦେଶ ବିଦେଶରେ ପ୍ରତିଷ୍ଠା ଲାଭ କରିଛନ୍ତି । ନନାଙ୍କ ପରେ ନିରାକାରପୁରରେ ଗୋଟିଏ (Girls High School) ମଧ୍ୟ ସ୍ଥାପିତ ହୋଇପାରିଲା ନାହିଁ । କିଏ ଏତେ ନିଃସ୍ୱାର୍ଥପର ସେବା ଦେବ ?

ହଁ, ନନାଙ୍କର ଦୁଇଟି ଇଚ୍ଛା ଅପୂରଣୀୟ ରହିଗଲା । ସ୍ୱର୍ଗତଃ ତାରେଶ୍ୱର ଦକ୍ଷଣକବାଟ ନନାଙ୍କର ଜଣେ ସହକାରୀ ଶିକ୍ଷକ ଓ ସହକର୍ମୀ ଥିଲେ । ନନାଙ୍କର ଆଦର୍ଶରେ ଅନୁପ୍ରାଣିତ ତାରେଶ୍ୱର ବାବୁ ତାଙ୍କ ଗ୍ରାମ ଗଡ଼ଖାରଦରେ ଗୋଟିଏ ହାଇସ୍କୁଲ ଓ ଅନେକ ଉନ୍ନତିମୂଳକ କାର୍ଯ୍ୟ କରିଛନ୍ତି । ତାଙ୍କରି ମୁହଁରୁ ଶୁଣିଛି । ନନା କପିଳେଶ୍ୱରଙ୍କ ମନ୍ଦିର ପାଖରେ ଗୋଟିଏ ସଂସ୍କୃତ ଟୋଲ ଓ ଗୋଟିଏ ଗୋଶାଳ କରିବା ପାଇଁ ଚାହିଁଥିଲେ । ଏ ଦୁଇଟି ଅଧୁରା କାର୍ଯ୍ୟ କରିବା ପାଇଁ ତାରେଶ୍ୱର ବାବୁ ମତେ କେତେଥର ଉତ୍ସାହିତ କରିଛନ୍ତି ମଧ୍ୟ । କିନ୍ତୁ ମୁଁ ସେ ବାବଦରେ ବିଶେଷ ଧ୍ୟାନ ନେଇନପାରିଥିବାରୁ ଲଜ୍ଜିତ ।

ନନାଙ୍କର ବିଷୟରେ ଯେତେ ଲେଖିଲେ ବି ସରିବନି । ମୁଁ ମାଲକାନଗିରିରେ S.D.J.M ଥାଏ । ବାଲିମେଳାରୁ ଜଣେ ଓ ମାଲକାନ୍‌ଗିରିରୁ ଜଣେ, ଯେକି ଆମ ଲେଣ୍ଡୋ ଗ୍ରାମର ଦୋଳଗୋବିନ୍ଦ ଦାଶଙ୍କ ସନ୍ତୁ ହେବେ- ମତେ ସାକ୍ଷାତ କରିବା ପାଇଁ ଅନୁମତି ମାଗିଲେ । କାଳେ ତାଙ୍କର କିଛି କେସ୍ ମୋ କୋର୍ଟରେ ଥିବା ଭାବି ମୁଁ ଶଙ୍କା କଲି । କିନ୍ତୁ ପରେ ଜାଣିଲି ଯେ ସେମାନେ ଆନନ୍ଦ ରଥଙ୍କ ପୁଅ ହିସାବରେ ମତେ ସାକ୍ଷାତ କରିବା ପାଇଁ ଚାହିଁଥିଲେ । କାରଣ ସେ ନନାଙ୍କର ଛାତ୍ର ଥିଲେ । ବାଲିମେଳାରୁ ଆସିଥିବା ବ୍ୟକ୍ତି (ନାଁ ଭୁଲିଯାଇଛି) କହିଲେ, ଆମକୁ ସେ ବୋଲଗଡ଼ରେ କାଖେଇଛନ୍ତି, କୁନିନାନୀ, ପୁନାନାନୀ ଓ ଭାଇନାଙ୍କ ବିଷୟ ମଧ୍ୟ ପଚାରି ବୁଝିଲେ । ମତେ ଦେଖି ସେମାନଙ୍କର କି ଆନନ୍ଦ । ଆଉ ଥର କର କଥା- ସାନଭାଇ ରବି ପାଖରୁ ଗୟାରୁ ଫେରୁଥାଏ । ଟ୍ରେନ୍‌ରେ ଅବଶ୍ୟ ମୁଁ ୨ଜଣ ଓଡ଼ିଆ ଲୋକଙ୍କୁ ଟି.ଟି.ଇ.ଙ୍କୁ କହି ଟିକେଟ୍ କରେଇବାରେ ସାମାନ୍ୟ ସାହାଯ୍ୟ କରିଥିଲି । ମୁଁ ସେତେବେଳେ ବାରିପଦାରେ Judicial Magistrate ଥାଏ । ବାଲେଶ୍ୱରରେ ଓହ୍ଲାଇବାର କଥା । ପରିଚୟ ଆଦାନପ୍ରଦାନରେ ଆମଘର ନିରାକାରପୁର ବୋଲି କହିବାରେ ସେମାନେ କହିଲେ- ''ଆମ ସାର୍‌ଙ୍କ ଗାଁ'' । ବୁଝିନପାରି ପଚାରିଲି – କାହା କଥା କହୁଛନ୍ତି । ସେମାନେ ନନାଙ୍କର ନାମ ନେଲେ । ମୁଁ ପଚାରିଲି –ଆପଣମାନେ ତାଙ୍କୁ କିପରି ଜାଣିଲେ ? ଉତ୍ତରରେ ସେମାନେ ଯାହା କହିଲେ ତାହା ଅକ୍ଷରେ ଲେଖୁଛି – ''କ'ଣ କହିଲେ – ତାଙ୍କୁ ଆମେ କେମିତି ଜାଣିଲୁ ? ସେ ପରା ଆମ ଅଞ୍ଚଳର ଧ୍ରୁବତାରା ।'' ପରେ ଯେତେବେଳେ ଜାଣିଲେ ଯେ ମୁଁ ତାଙ୍କର ଦ୍ୱିତୀୟ ପୁତ୍ର, ସେମାନେ ମତେ ମୁଣ୍ଡିଆ ମାରି କହିଲେ, – ଆଜି ଆମର ବଡ଼ ଭାଗ୍ୟ । ଆପଣଙ୍କୁ ଦେଖିଲୁ । ସେମାନେ ଥିଲେ ବଙ୍କୁ ଅଞ୍ଚଳର ଲୋକ ।

ସାନଭାଇ- ଡ଼ାକ୍ତର ରବି ନାରାୟଣ ନନାଙ୍କର ରାଜାଜୀ (ଗେଲ୍ହା ଡ଼ାକ) ଥିଲା । ସତରେ ବଡ଼ ଲଜ୍ୟା ଲାଗେ ଯେ ଆନନ୍ଦ ରଥଙ୍କ ପୁତ୍ର ହୋଇ ସମାଜରେ ସ୍ମରଣୀୟ ହେଲାଭଳି କିଛି କାର୍ଯ୍ୟ ମୁଁ କରିପାରିନାହିଁ । କିନ୍ତୁ ରବି ତାର ପ୍ରକାଶିତ ୪୦ରୁ ଉର୍ଦ୍ଧ୍ୱ ବହି ମାଧମରେ କିଛିଟା ସ୍ମରଣୀୟ କାର୍ଯ୍ୟ କରିଛି ବୋଲି ମୁଁ ଅନୁଭବ କରେ । ଲେଖାଲେଖି କରିବା ଏକ ନିଶା ଓ ତା'ପାଇଁ ଯେଉଁ ପରିବେଶ ଆବଶ୍ୟକ ତାହା ମୋ ପାଇଁ ୨୦୦୨ ମସିହାରେ ଚାକିରୀରୁ ଅବ୍ୟାହତି ନେବା ପର୍ଯ୍ୟନ୍ତ ନଥିଲା । ସ୍ୱୀକାର କରୁଛି ଦୀର୍ଘ ୧୨ବର୍ଷ ମଧ୍ୟରେ ସେ ଦିଗରେ ମୁଁ ଯତ୍ନବାନ ହୋଇଚି । ଯାହା ହେଉ, ରବିର ବାରମ୍ବାର ତାଗିଦ୍ ଫଳରେ ଆଜି ନନାଙ୍କ ସମ୍ପର୍କ ଓ ତାଙ୍କର ସମାଜକୁ ଦାନ ବାବଦରେ ଉକ୍ତ ଲେଖାଟି ମୋର କହିଲେ ସ୍ଥାନିତ ହେବ ଭାବି ଅପୂର୍ବ ଆନନ୍ଦ ଲାଭ କରୁଛି ଓ ସ୍ୱର୍ଗରେ ଥାଇ ନନାଙ୍କର ଆଶିଷ ଆମ ପରିବାରର ସମସ୍ତଙ୍କ ପାଇଁ ଭିକ୍ଷା କରୁଛି ।

ପ୍ରତ୍ୟେକ ସଫଳ ମଣିଷ ପଛରେ କୌଣସି ନାରୀଙ୍କର ହାତଥାଏ ବୋଲି କୁହାଯାଏ । ନନାଙ୍କର ସଫଳତା ପଛରେ ବୋଉର ଅବଦାନ କିଛି କମ୍ ନୁହେଁ । କାରଣ ନନା ଘର କଥା କିଛି ବୁଝୁନଥିଲେ । ଜମିବାଡ଼ି, ଘରକଥା ସବୁ ବୋଉ ବୁଝୁଥିଲା । ଫଳରେ ନନାଙ୍କୁ ସେ ଜଞ୍ଜାଳ ନଥିଲା । ଥରେ ଅଧେ ବୋଉ ନନାଙ୍କୁ ପିଲାମାନଙ୍କର ପାଠ ଟିକିଏ ଦେଖୁନ କାହିଁକି ବୋଲି ଆପତ୍ତି କରିଥିଲା । ଉତ୍ତରରେ ନନା କହିଥିଲେ- ସେମାନେ ତ ପ୍ରାୟ ପଢୁଛନ୍ତି । ତୁମେ କ'ଣ ଭାବୁଛ - ମୁଁ ମୋର ଏତେ ପିଲାଙ୍କୁ ନଦେଖି ମୋର ଚାରିପୁଅଙ୍କୁ ବସି ଟ୍ୟୁସନ କରିବି ବୋଲି ? ତେଣୁ ନନା ଆମ ଚାରିଭାଇଙ୍କ ପାଠପଢ଼ା ପ୍ରତି କେବେ ହେଲେ ବିଶେଷ ଧ୍ୟାନ ଦେଇନଥିଲେ ଅବଶ୍ୟ ଆମେ ସମସ୍ତେ ଚଳନୀୟ ଭାବେ ଭଲ କରୁଥିଲୁ ।

ବହୁତ ଥର ଲକ୍ଷ୍ୟ କରିଛି - ନନା ଏକା ଏକା ଭୋଜନ କରୁନଥିଲେ । ସାଙ୍ଗରେ ଜଣେ ଅଧେ ରହୁଥିଲେ, ଉଭୟଙ୍କ ପାଇଁ ବାଢ଼ିବା ପାଇଁ ବୋଉକୁ କୁହନ୍ତି । ବିନା ନୋଟିସ୍‌ରେ ଏଇପରି କରୁଥିବାରୁ ବୋଉର ବୋଧହୁଏ ଅଭ୍ୟାସ ହୋଇଗଲା ବହୁ ସମୟରେ ବିନା ତରକାରୀରେ ଅନ୍ୟ କିଛି ଲଗାଇ ଅର୍ଥାତ୍ ଆଚାର, କୋରା ନଡ଼ିଆରେ ଚିନି ଦେଇ ଭାତ ଖାଇବା ମୁଁ ଲକ୍ଷ୍ୟ କରିଛି । ଆପତ୍ତି ଅଭିଯୋଗ ନଥାଏ । ପ୍ରକୃତ ସହଯୋଗୀ ଭାବେ ବୋଉ ଏ ପ୍ରକାର ନନାଙ୍କୁ ଚଳାଇ ନେଉଥିଲା । ନନା ସବୁବେଳେ କିଛି ନା କିଛି ଚିନ୍ତା

କରୁଥିଲେ । ନିଜ ପାଇଁ ବା ନିଜ ଘର ପାଇଁ ନୁହେଁ । କପିଳେଶ୍ୱର ଦେବଙ୍କ ରଥଯାତ୍ରା, ରଥନିର୍ମାଣ, କଲେଜ, ହାଇସ୍କୁଲ, ଗାଁ ଗଣ୍ଡା କଥାରେ ସବୁ ସମୟରେ ଭାବୁଥିଲେ ସେ । ସାମାନ୍ୟ ଜ୍ୱର, କାଶ, ଥଣ୍ଡା ହେଲେ ତାଙ୍କର ଚିକିତ୍ସା ଥିଲା ଉପବାସ (fasting) । ଅସୁସ୍ଥ ହୋଇ ନନା କେବେ ଡ଼ାକ୍ତରଖାନା ଯାଇଥିବା କଥା ଆମକୁ ଜଣାନାହିଁ ।

**ଗାନ୍ଧିବାଦୀ :**

ଜୀବନସାରା ଖଦୀ ପିନ୍ଧା ଲୋକଥିଲେ ନନା । ଅରଟରେ ସୂତାକଟା, ରାମଧୂନ, ଗ୍ରାମ ସଫେଇ, ସ୍ୱଦେଶ ପ୍ରୀତି, କଂଗ୍ରେସୀ, ଶିକ୍ଷାର ପ୍ରଚାର, ପ୍ରସାର ଅସ୍ପୃଶ୍ୟତା ବିରୋଧୀ, ବାଲ୍ୟ ବିଧବାଙ୍କ ପୁନଃ ବିବାହ, co-eudcation ଗ୍ରାମ ବିବାଦର ଆପୋଷ ସମାଧାନ ଇତ୍ୟାଦି ଥିଲା ତାଙ୍କର ଧର୍ମ । ଭାରତ ଗୋଟିଏ ଗ୍ରାମ ବହୁଳ ଓ କୃଷି ପ୍ରଧାନ ଦେଶ । ଗ୍ରାମର ଉନ୍ନତି ଓ କୃଷିର ଉନ୍ନତି ଦେଶର ଉନ୍ନତି ବୋଲି ସେ ବୁଝିଥିଲେ । ମଝିରେ ମଝିରେ ଗାଁ ଗଣ୍ଡାର କିଛି କିଛି ଉତ୍ସାହୀ ଲୋକମାନଙ୍କୁ ନେଇ 'ଶ୍ରମଦାନ' କରି ଗାଁ ଦାଣ୍ଡ, ପୋଖରୀ ଓ ରାସ୍ତା ପରିଷ୍କାର କରାଇବା ନଜିର ଥିଲା । ପ୍ରେସ୍‌ରେ ଛପାଇବା ବ୍ୟୟ ବହୁଳ ହୋଇଥିବାରୁ cyclostyle କରି ନିଜ ଗ୍ରାମ ଓ ପଡ଼ୋଶୀ ଗ୍ରାମମାନଙ୍କର ଅଗ୍ନି ନିର୍ବାପନ ପାଇଁ ପ୍ରତ୍ୟେକ ଦୁଆର ମୁହଁରେ ମାଟିର ହାଣ୍ଡି ବା ମାଠିଆରେ ପାଣି ରଖିବା, ପାଇଖାନା ତିଆରି ବ୍ୟୟବହୁଳ ହୋଇଥିବାରୁ ଟ୍ରେଞ୍ଚ୍ ଖୋଳି ତହିଁରେ ଝାଡ଼ାଯିବା ଆଦି ଅନେକ କାର୍ଯ୍ୟ ସେ ହାତକୁ ନେଇଥିଲେ । ବୃକ୍ଷରୋପଣ ନିଜେ କରିବା ସାଥେ ସାଥେ ଅନ୍ୟମାନଙ୍କୁ ସେଥିପାଇଁ ପ୍ରବର୍ତ୍ତାଇ ଥିଲେ । ଯାହାଫଳରେ ଆମ ଗାଁରେ ପ୍ରାୟ ସମସ୍ତଙ୍କ ଘର ସାମନା ଓ ବାଡ଼ିରେ ମୁଖ୍ୟତଃ ନଡ଼ିଆ ଓ ଅନ୍ୟ ଗଛମାନ ବଢ଼ି ଉଠିଛି । ନିଜର ଦୁଇଟି ବଗିଚାରେ ସମସ୍ତ ପ୍ରକାର ଗଛ ଲଗାଇବା ଥିଲା ତାଙ୍କର ସଉକ ।

**ଛାତ୍ରବତ୍ସଳ**

ଶିକ୍ଷା ପ୍ରତି ନନାଙ୍କର ଥିଲା ବଡ଼ ଦୁର୍ବଳତା । ତେଣୁ ପିଲାମାନେ କିପରି ଅଧିକରୁ ଅଧିକ ସଂଖ୍ୟାରେ ପାଠ ପଢ଼ିବେ ସେଥିପାଇଁ ସେ ଭାରି କୋହଳନୀତି ଅବଲମ୍ବନ କରୁଥିଲେ । ଅଭିଭାବକମାନଙ୍କୁ ପ୍ରବର୍ତ୍ତାଇ ପିଲାମାନଙ୍କୁ ସ୍କୁଲକୁ ଅଣାଇବା, ଗରୀବ ଘରର ପିଲାମାନଙ୍କୁ free studentship ଦେବା, ମେଧାବୀ ପିଲାମାନଙ୍କୁ ସ୍କୁଲରେ ଗୋଟିଏ

Preliminry examiantion କରି, ଉପର ଶ୍ରେଣୀରେ admission ଦେବା ଓ ସର୍ବୋପରି ଆବଶ୍ୟକସ୍ଥଳେ ଛାତ୍ରକୁ ଆଣି ନିଜ ଘରେ ରଖି ତା'ର ପାଠପଢ଼ାକୁ ସୁଗମ କରିବା ଥିଲା ନନାଙ୍କର ଅଭ୍ୟାସ । ବୋଉଙ୍କଠାରୁ ଶୁଣିଥିବା ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ବୋଲଗଡ଼ ହାଇସ୍କୁଲର କଥା । ଡ଼ଃ ବୈଦ୍ୟନାଥ ମିଶ୍ର (ଅର୍ଥନୀତିଜ୍ଞ) ଜଣେ ମେଧାବୀ ଥିଲେ ବୋଲି ଅନୁଭବ କରି ନନା ତାଙ୍କୁ ଗୋଟିଏ ଛୋଟ ପରୀକ୍ଷାଟିଏ କରି ଉପର ଶ୍ରେଣୀରେ ନାମ ଲେଖାଇ ଥିଲେ । ସେତିକି ନୁହେଁ, ତାଙ୍କର ଆର୍ଥିକ ସ୍ୱଚ୍ଛଳତା ନଥିବାରୁ ତାଙ୍କୁ ଆଣି ଆମ ଘରେ (ବୋଲଗଡ଼ର) ରଖି ପାଠ ପଢ଼ିବାରେ ସହାୟତା କରିଥିଲେ । ଆମ ହେତୁ ହେବା ପରେ ମଧ ମୁଁ ଦେଖିଛି - କେତେ ପିଲା ଆସି ଘରେ ରହି ପାଠ ପଢୁଥିଲେ, ତା'ର ହିସାବ ନାହିଁ । ନନାଙ୍କର ଆଖି ଦୁଇଟିକୁ ପ୍ରାୟ ଚାହିଁ ହୁଏ ନାହିଁ । ମନେହୁଏ, ଦୁର୍ବାଷା ଋଷିଙ୍କ ପରି ଜ୍ୱଳନ ଆଖି ଓ ଭାରି କ୍ରୋଧୀ । କିନ୍ତୁ ହୃଦୟଟି ତାଙ୍କର ଏତେ କୋମଳ ତାହା ଗୋଟିଏ ଦୁଇଟି ଉଦାହରଣରୁ ସୁସ୍ପଷ୍ଟ ।

ହଁ coaching class ପାଇଁ ଆମ ବଗିଚାରେ ଯେତେବେଳେ class ନିଆଯାଏ, ପିଲାମାନେ ସେତେବେଳେ ଚପଳାମୀ କରି ପିଜୁଳି, ଗୋଲାପ ଜାମୁ, ସପେଟା, ପଇଡ଼ ଆଦି ତୋଳି ଖାଇବାର ଦୃଷ୍ଟାନ୍ତ ଅଛି । ସେ ବିଷୟରେ ମୁଁ ଆସି ବୋଉ ଜରିଆରେ ଆପତ୍ତି କରିବାରେ ନନାଙ୍କର ଉତ୍ତର ମଧ ଶୁଣିଛି, - ''ପିଲାମାନେ ଗଛମୂଳେ ଫଳ ଖାଇଲେ, ଗଛରେ ଅଧିକ ଫଳ ଆସେ'' ।

କୌଣସି ପିଲାକୁ Tution କରନ୍ତି ନାହିଁ । କିନ୍ତୁ ସମସ୍ତଙ୍କୁ କୁହନ୍ତି - କିଛି home task /work କରି ତାଙ୍କୁ ଦେଖାଇବା ପାଇଁ ସାଧାରଣ ଭାବେ କଥାବାର୍ତ୍ତା ମାଧମରେ ମଧ ନନା ଯେକୌଣସି ସ୍ଥାନରେ ପିଲମାନଙ୍କୁ ଭୁଲ ଥିଲେ ସଂଶୋଧନ କରି ଶିକ୍ଷା ଦେବା ଦୃଷ୍ଟାନ୍ତ ପ୍ରଚୁର । ଭୁଲ ସାଙ୍ଗରେ compromise କରିବା ତାଙ୍କ ଜାତକରେ ନଥିଲା ବୋଧେ । ମନେଅଛି -ରାଜୁ ରାୟ ଓଡ଼ିଆର Chief Examiner. ବ୍ୟାକରଣରେ 'ଦଶାନନ' କେଉଁ ସମାସ ଓ ବ୍ୟାସବାକ୍ୟ କ'ଣ ଥିଲା । Chief Examiner ଙ୍କ ପାଖରୁ ଆସିଥିବା Instructionରେ ଏହା 'ଦଶଆନନ' ଯାହାର ସେ ଦଶାନନ ଓ ବହୁବ୍ରିହି ସମାସ ବୋଲି ଉଲ୍ଲେଖ ଥିଲା । Specimen ଖାତାରେ ଗୋଟିଏ ପିଲା ଏହାକୁ ସମାହାର ଦ୍ୱିଗୁ ବୋଲି ଲେଖିଥିଲା । ନନା ତାକୁ ପୁରା ନମ୍ବର ଦେଇଥିଲେ କିନ୍ତୁ Chief Examnier ତାକୁ

କାଟିଦେଲେ । ନନା କି ସମ୍ଭାଳିବା ଲୋକ । ଚାଲିଲେ ପୁରୀ । Chief Examiner ତାଙ୍କର ଭୁଲ ବୁଝି ପୁଣିଥରେ Examiner ମାନଙ୍କୁ ସଂଶୋଧିତ ନିର୍ଦ୍ଦେଶନାମା ପଠାଇଥିଲେ । ନିରାକାରପୁର ହାଇସ୍କୁଲରେ ଥିବା ସମୟରେ Inspector of Schools ଦେଇଥିବା ଲିଖିତ ମନ୍ତବ୍ୟ ନନାଙ୍କ ଦୃଷ୍ଟିକୁ ଆସିବା ପରେ ସେଥିରେ ଗୋଟିଏ ଦୁଇଟି ଭୁଲ ଥିବାର ଦେଖି ନାଲି କାଳିରେ ଗୋଲ ବୁଲାଇ ଦେଇଥିଲେ । ସେଥିରେ Inspector ମହୋଦୟ ପରବର୍ତ୍ତୀ ସମୟରେ କ୍ଷୁବ୍ଧ ହୋଇଥିଲେ ମଧ୍ୟ ନନା ସେଥିରେ ବିଚଳିତ ହୋଇ ନଥିଲେ । ଶଙ୍ଖତ୍ରାସରେ ହେ : ମା ଥିଲା ବେଳେ କାହ୍ନୁଚରଣ ଲେଙ୍କା ନନାଙ୍କ ଜରିଆରେ ସ୍କୁଲ ସମ୍ବନ୍ଧୀୟ ଅଭିଯୋଗ କେତୋଟି ଉପରିସ୍ଥ ଅଫିସରଙ୍କୁ ପଠାଇବାକୁ ଚାହିଁଥିଲେ । ସେ ଲେଖାରେ ଏତେ ଭୁଲ ଥିଲା ଯେ ନନା ତାକୁ ପ୍ରାୟ ନାଲି ରଙ୍ଗରେ ପରିଣତ କରି କାହ୍ନୁବାବୁଙ୍କୁ ଏହା ପଠାଇବି କି'' ବୋଲି ପ୍ରଶ୍ନ କରନ୍ତେ, ମହାଶୟ ମନା କଲେ । କହିବା କଥା- ଭୁଲଟିଏ ଦେଖିଲେ ତାକୁ ସଂଶୋଧନ କରିବାକୁ ଜଣେ ଶିକ୍ଷକ ହିସାବରେ ତାଙ୍କ ହାତ ଆପେ ଆପେ ଚାଲିଯାଉଥିଲା । ନନା କହୁଥିଲେ – you may know little, but whatever you know, know it correctly; କଥାବାର୍ତ୍ତା ସମୟରେ pronounciation ଉପରେ ମଧ୍ୟ ଗୁରୁତ୍ୱ ଦେଉଥିଲେ । ସଦାବେଳେ Dictionary ଦେଖ ବୋଲି ଥିଲା ତାଙ୍କର ପରାମର୍ଶ । ସହକାରୀ ଶିକ୍ଷକମାନଙ୍କୁ କହୁଥିଲେ- ସମୟ ନିଅ ପଛେ never teach a wrong thing । ତାଙ୍କର ଆଉ ଗୋଟିଏ ମୂଲ୍ୟବାନ ପରାମର୍ଶ ଥିଲା -ପ୍ରତ୍ୟେକ ଶିକ୍ଷକଙ୍କର ପ୍ରାଥମିକ କାର୍ଯ୍ୟ ହେଉଛି – ଛାତ୍ର /ଛାତ୍ରୀଙ୍କର ଗୋଟିଏ ବିଷୟରେ ଆଗ୍ରହ ସୃଷ୍ଟି କରାଇ ପାରିଲେ ଅଧା କାମ ହୋଇଗଲା । Elementary ଓ Rudimentary ଜ୍ଞାନ ଉପରେ ସେ ବିଶେଷ ଗୁରୁତ୍ୱ ଦେଉଥିଲେ । Grammar ଉପରେ ତାଙ୍କର ଥିଲା ପ୍ରବଳ ଦଖଲ । ତେଣୁ ତାଙ୍କ ଲେଖା ଥିଲା ଶୁଦ୍ଧ ଓ ସ୍ୱଚ୍ଛ । ବୋଧହୁଏ ସେଇଥିପାଇଁ ସେ Patna University ରୁ I.A. ଓ B.A. privately ଓ Second Divn. ରେ ଗୋଟିଏ ଥରକରେ ପାସ କରିବା ସମ୍ଭବ ହୋଇଥିଲା । ନନା ଆମର C.T ରେ ଓଡ଼ିଶାରେ ପ୍ରଥମ ହୋଇ ପାସ୍ କରିଥିବା କଥା ସାନ କକେଇଙ୍କ ଶଳାଙ୍କଠାରୁ ଶୁଣିଛୁ । କାରଣ ତାଙ୍କ ନନା 2nd ହୋଇଥିଲେ । ନନାଙ୍କର ଜ୍ଞାନ କେବଳ ଇଂରାଜୀ ନୁହେଁ, ସାହିତ୍ୟ, ସଂସ୍କୃତ, ଇତିହାସ, ଭୂଗୋଳ ଇତ୍ୟାଦି ବିଷୟମାନଙ୍କରେ ମଧ୍ୟ ଭଲ ଦଖଲ ଥିଲା । ରାଜନୀତି ବିଜ୍ଞାନ, philosophy ଉପରେ ମଧ୍ୟ ସେ ଦୀର୍ଘ ସମୟ ଅଧ୍ୟାପକମାନଙ୍କ

ସାଙ୍ଗରେ କରିବା ଦେଖାଯାଉଥିଲା । ସେଥିପାଇଁ ଶିକ୍ଷକ, ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ମହଲରେ ତାଙ୍କର ଥିଲା ଏକ ସ୍ୱତନ୍ତ୍ର ସ୍ଥାନ ।

ବୃକ୍ଷ ହିଁ ଜୀବନ । ତେଣୁ ବୃକ୍ଷରୋପଣ ଉପରେ ସେ ଗୁରୁତ୍ୱ ଦେଉଥିଲେ । ସାନ ଜ୍ୱୋଇଁ ୰ ଦ୍ୱାରୀକାନାଥ ବୋଧହୁଏ ଏ ଉପଦେଶ ଭଲ ବୁଝି ପାରିଥିଲେ । ଫଳରେ ଚିତ୍ରକୂଟ ପାହାଚରେ ଦ୍ୱାରୀକାନାଥ aforestation କାମ ହାତକୁ ନେଇ ଗୋଟିଏ ବଡ଼ ଜଙ୍ଗଲ ସୃଷ୍ଟି କରିପାରିଥିଲେ । ଅବଶ୍ୟ କେତେକ ଖଳପ୍ରକୃତିର ଲୋକ ଦ୍ୱାରୀକାନାଥଙ୍କର ଦେହାନ୍ତ ପରେ ସେ ଜଙ୍ଗଲର ପ୍ରଭୁତ କ୍ଷତି କରିଛନ୍ତି । କିନ୍ତୁ ନନାଙ୍କର ଏ ପରାମର୍ଶର ମୂଲ୍ୟବୋଧ ଓ ସୁଦୂରପ୍ରସାରୀ ପ୍ରଭାବ ଆଜିକା ଦିନରେ ମହତ୍ୱ ରଖେ । ଲୋକେ ଗଛ କାଟି ନେଉଛନ୍ତି, ଚୋରୀ କରୁଛନ୍ତି ବୋଲି, ଆମେ ଗଛ ଲଗାଇବାକୁ ନିବୃତ ହେବା ଅନୁଚିତ । ଭାରତ ଗୋଟିଏ ଗ୍ରାମ ବହୁଳ ଦେଶ । ଗ୍ରାମ ସମୂହର ଉନ୍ନତିରେ ଦେଶର ଉନ୍ନତି । ତେଣୁ ନନା ନିଜକୁ ସହରଭିମୁଖୀ ନକରି, ଗ୍ରାମ ସମୂହର ଉନ୍ନତି ପାଇଁ ଉତ୍ସର୍ଗୀକୃତ ଥିଲେ ।

**ବୈଷୟିକ ଜ୍ଞାନ /ଚିନ୍ତା**

ଏକ ରକ୍ଷଣଶୀଳ ଓ ଧନାଢ଼୍ୟ ନହେଲେ ବି ମଧ୍ୟବିତ ପରିବାରରେ ତାଙ୍କର ଜନ୍ମ । ସାନଭାଇ ଦିନବନ୍ଧୁ ଜଣେ ଜଣାଶୁଣା ହୋମିଓପାଥିକ ଡ଼ାକ୍ତର । ତାଙ୍କ ତଳ ଭାଇ କୃପାସିନ୍ଧୁ ଅବକାରୀ ବିଭାଗର ଇନ୍ସପେକ୍ଟର ଭାବେ ଅବସର ଗ୍ରହଣ କରିଥିଲେ । ସର୍ବକନିଷ୍ଠ ବାସୁଦେବ ରେଳ ବିଭାଗରେ ଚାକିରୀ କରି ଅବସର ନେଲେ । ଶିକ୍ଷାଗତ ଯୋଗ୍ୟତା ବୋଧହୁଏ ତାଙ୍କୁ ବୁଦ୍ଧଦେବଙ୍କ ବାଣୀରେ ଉଦ୍‌ବୁଦ୍ଧ କରିଥିଲା । କାରଣ ବୁଦ୍ଧଦେବଙ୍କ ଭାଷାରେ "Desire is the root of all suffereings one could have true happiness only by conquerring desire" - ତେଣୁ ସେ ଚର୍ଚ୍ଚିତ ବିଷୟ ପ୍ରତି ଏତେ କିଛି ଧ୍ୟାନ ଦେଇନଥିଲେ । ମେରେଦା ଘର, ତାଙ୍କୁ Air conditioned ଭଳି ଲାଗୁଥିଲା । ସେ ଅଳ୍ପରେ ସନ୍ତୁଷ୍ଟ ହେବାକୁ ଅଭ୍ୟାସ କରିଥିଲେ । ଚାହିଁଥିଲେ ହୁଏତ ସେ ଯଥେଷ୍ଟ ସମ୍ପତ୍ତି କରିପାରିଥାନ୍ତେ, କିନ୍ତୁ ଜୀବନର ଦର୍ଶନ ତାଙ୍କର ଥିଲା ଅନ୍ୟମାନଙ୍କଠାରୁ ଟିକିଏ ଭିନ୍ନ । ପେଟକୁ ଦାନା, ପିନ୍ଧିବାକୁ କନା ଥିବା ଦୃଷ୍ଟିରୁ, ସେ ଗୋଟିଏ ଉତ୍ସର୍ଗୀକୃତ ମନନେଇ ସମାଜର କଲ୍ୟାଣ ପାଇଁ ଗୁଣ୍ଡୁଚି ମୂଷାଟିଏ ଭଳି ଲାଗିପଡ଼ିଥିଲେ । ତାଙ୍କ ଭଳି

ନିଃସ୍ୱାର୍ଥପର ଜନସେବକ ଆଜି ବିରଳ । ଯଦି ପ୍ରଚାର ପ୍ରସାର କରାଯାଇଥାନ୍ତା, ହୁଏତ ନନାଙ୍କୁ କିଛି ରାଷ୍ଟ୍ରୀୟ ସମ୍ମାନ ମିଳିପାରିଥାନ୍ତା- କିନ୍ତୁ ମୋର ମନେଅଛି, ବାଲୁଗାଁର ଡ଼ାକ୍ତର ରାଧାଚରଣ ପଣ୍ଡା ନନାଙ୍କର ଜୀବନୀ ଲେଖିବା ପାଇଁ କିଛି ତଥ୍ୟ ମାଗି ନିରାଶ ହୋଇଥିଲେ । ନନା ତାଙ୍କୁ କହିଥିଲେ - ନିସ୍ୱାର୍ଥପରଭାବେ ଗଠନମୂଳକ କାମ କରି ଖାଲିରେ ଅନେକ ଶତ୍ରୁ ଅର୍ଜୁଛେ । ପୁଣି ଏମିତି କଲେ, ଅଧିକ ଲୋକ ଈର୍ଷାନ୍ୱିତ ହେବେ । ନିଜର ଆତ୍ମତୃପ୍ତି ପାଇଁ କାମ କରୁଛେ । ସେତିକି ଯଥେଷ୍ଟ । ଲେଖାଲେଖି କରନ୍ତୁ ନାହିଁ ।

ପିଲାଦିନେ ବୋଉ ପାଖରେ ଆମର ଜମିଚାଷ କରିଥିବା ଲୋକମାନେ ଧାନକଳେଇ କିଛି ତାଙ୍କ ବାଡ଼ିକୁ ନେଇ ଯାଉଥିବା ଦେଖି ଆପତ୍ତି କଲେ, ବୋଉ ନନାଙ୍କୁ କହେ- ନନାଙ୍କର ଉତ୍ତର ପାଇଲା ପରେ ଆମର ପାଟି ଚୁପ । ସେ କହନ୍ତି - ''ବୁଭୁକ୍ଷିତକିଂ ନକରୋତି ପାପଂ'' ଇତ୍ୟାଦି । "Days are not far off, when things will be snatched away from your mouth" । ଏଭଳି କଥା ଶୁଣିଲା ପରେ ଆମେ ଆଉ ଅଭିଯୋଗ କରିବାକୁ ସାହାସ କରୁନଥିଲୁ ।

## ରାଜନୀତି

୧୯୫୧ ର କଥା । ନିର୍ବାଚନ ମଣ୍ଡଳୀ (constitution) ର ନାଁ କଣ ଥିଲା ସ୍ପଷ୍ଟ ମନେ ପଡୁନାହିଁ । କିନ୍ତୁ ରଣପୁର, ଟାଙ୍ଗି ଅନ୍ତର୍ଭୁକ୍ତ ଥିଲା । ପ୍ରଦେଶ କଂଗ୍ରେସ ଉକ୍ତ ନିର୍ବାଚନ ମଣ୍ଡଳୀରୁ ନନାଙ୍କର ନାମ ସୁପାରିଶ କରିଥାଏ । ଶୁଣିଛି ଯେ ଟିକେଟ୍ ମିଳିବା ଆଗରୁ ନନା ରଣପୁର ଯାଇଥାନ୍ତି ପରିସ୍ଥିତି ଅନୁଧ୍ୟାନ କରିବା ପାଇଁ । ସେଠାରେ ଲୋକମାନେ ସ୍ୱତଃ ଯେଉଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଲେ, ତତ୍କାଳୀନ ରାଜାମାତା ବସନ୍ତ ମଞ୍ଜରୀ ଦେବୀ ସେଥିରେ ଈର୍ଷାନ୍ୱିତ ହୋଇ ତାଙ୍କର ଯେଉଁ ଛୋଟିଆ ଉଡ଼ାଜାହାଜ ଥିଲା, ସେଥିରେ ଦିଲ୍ଲୀ ଯାଇ ନେହେରୁଙ୍କ ହସ୍ତକ୍ଷେପ ଫଳରେ ନନାଙ୍କର ଟିକେଟ୍ କଟିଗଲା । ସେଥିପାଇଁ ନନାଙ୍କର ଅନୁଶୋଚନା ନଥିଲା । ବିଜୁ ପଟ୍ଟନାୟକଙ୍କର ନନା ଜଣେ ଦୃଢ଼ ସମର୍ଥକ ଥିଲେ । ତା'ର ମୁଖ୍ୟ କାରଣ ଆଉ କିଛି ନୁହେଁ - ଜଣେ ଓଡ଼ିଆ ହିସାବରେ ବିଜୁବାବୁ ଯେଉଁ ସୋପାନକୁ ଯାଇ ପାରିଥିଲେ- ତାହା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗର୍ବର ବିଷୟ ଥିଲା । ଅବଶ୍ୟ ସେ କଥାର ପ୍ରାସଙ୍ଗିକତା ଆଜି ଦିନରେ ନଥାଇପାରେ । ନନା ସକ୍ରିୟ ରାଜନୀତିରେ ନଥିଲେ ମଧ୍ୟ ଆମେ ଦେଖିଛୁ - ବନମାଳୀ ପଟ୍ଟନାୟକ ଡ଼ାକ୍ତର ବେଣୁଧର ବଳିୟାର ସିଂ, ଚିନ୍ତାମଣି ପାଣିଗ୍ରାହୀ

ପ୍ରଭୃତି ରାଜନେତା ନନାଙ୍କର ଆଶୀର୍ବାଦ ଭିକ୍ଷା କରିବାପାଇଁ ଆସିଥାନ୍ତି । ମୋଟାମୋଟି ଭାବେ ନନା ଥିଲେ ଜଣେ ପ୍ରକୃତ ଗାନ୍ଧିବାଦୀ କଂଗ୍ରେସକର୍ମୀ ।

**ନିରାକାର (ପୁର)ରେ ସାକାର:**

ଯେଉଁଠି ବର୍ତ୍ତମାନ କ୍ଷେତ୍ରବାସୀ ଡ଼ି.ଏ.ଭି. ମହାବିଦ୍ୟାଳୟ ଅବସ୍ଥିତ, ସେଇ ନନୀଠାରୁ ମୁଖ୍ୟଅଂଶ ୧୯୫୭/୫୮ରେ ସଂପୂର୍ଣ୍ଣ ହୋଇଥାଏ । ମୁଁ ସେତେବେଳେ ୯ମ ଶ୍ରେଣୀର ଛାତ୍ର । ନନା ଓ ତାଙ୍କର କିଛି ସହଯୋଗୀ ଯଥା- ବଳରାମ ପାଇକରାୟ, ସ୍ୱପ୍ନେଶ୍ୱର ବାଗ, ଲକ୍ଷ୍ମଣ ସାହୁ, ବିଶ୍ୱନାଥ ବାଗ, ଜୟକୃଷ୍ଣ ଦାଶ, ବିଶ୍ୱନାଥ ବେହେରା ଓ ଆଉ କିଛି ଲୋକଙ୍କର କଠିନ ପରିଶ୍ରମ ଫଳରେ ବନମାଳୀ ପଟ୍ଟନାୟକଙ୍କର ବିଜୟ ହୋଇଥାଏ । ଡଃ ରାଧାନାଥ ରଥ ଶିକ୍ଷା ବିଭାଗର ମନ୍ତ୍ରୀ ଥାଆନ୍ତି । ଧାନାଢ଼୍ୟ କ୍ଷେତ୍ରବାସୀ ରାଉତରାୟଙ୍କୁ ଅର୍ଥଦାନ ପାଇଁ ମନାଇ, ବନମାଳୀ ପଟ୍ଟନାୟକ, ସୂରଜ ମଲ୍ଲ ସାହା ପ୍ରଭୃତିଙ୍କର ଦୃଷ୍ଟି ଆକର୍ଷଣ କରି, ଗାଁକୁ ଗାଁ ବୁଲି, ମୁଷ୍ଟି ଭିକ୍ଷା ମାଧମରେ ଆମ ଅଞ୍ଚଳର ଲୋକମାନଙ୍କୁ ସଂଶ୍ଳିଷ୍ଟ କରି ନିରାକାରପୁରରେ ବିଜ୍ଞାନ କଲେଜର ଶୁଭାରମ୍ଭ କଲେ । ୧୯୫୯ ମସିହାରେ ନିରାକାରପୁରରେ ବିଜ୍ଞାନ କଲେଜ ମୁଣ୍ଡ ଟେକି ଉଠିଲା । ସେତେବେଳକୁ ମୋର ୧୧ଜଣ ଶ୍ରେଣୀ । କଲେଜ ଉଦ୍ଦେଶ୍ୟରେ ହାଇସ୍କୁଲର କୋଠାଘର, ଖେଳ ପଡ଼ିଆ ଆଦି ଉତ୍ସର୍ଗ ହେଲା । ଆଜି ଯେଉଁଠି ହାଇସ୍କୁଲ ଅଛି ସେଠାରେ ଥିବା ଘରକୁ ହାଇସ୍କୁଲ ଉଠି ଆସିଲା । ଏଠି ସେଠି ଯାଇ ରହି ପଢ଼ିଲେ । ନିରାକାରରେ ସାକାର ହେଲା । କଟକ, ବ୍ରହ୍ମପୁର, ଜଟଣୀ, ବାଲୁଗାଁ ଓ ଆହୁରି ଅନେକ ଯାଗାରୁ ପିଲାମାନେ ବିଜ୍ଞାନ ପଢ଼ିବା ପାଇଁ ଆସିଥିଲେ । କାରଣ ଓଡ଼ିଶାରେ ସେତେବେଳେ ଅଳ୍ପ କେତୋଟି ବିଜ୍ଞାନ କଲେଜ ଥିଲା । ପରବର୍ତ୍ତୀ ସମୟରେ କଳା ଓ ବାଣିଜ୍ୟ ଇତ୍ୟାଦି ବିଭାଗ ମଧ ଖୋଲିଲା । ଓଡ଼ିଶାର ସର୍ବପୁରାତନ ବେସରକାରୀ ବିଜ୍ଞାନ କଲେଜ ହେଉଛି ଆମ କଲେଜ । କଲେଜଟି ନନାଙ୍କର ମାନସ ପୁତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । ୧୯୫୯ ମସିହାରୁ ୧୯୮୫ ମସିହା ପର୍ଯ୍ୟନ୍ତ ନନା ଥିଲେ ସବୁଠାରୁ କର୍ମଠ Governing Body ର ସଦସ୍ୟ । ୧୯୫୯ରେ ନିରାକାରପୁରକୁ ବିଜୁଳି ଆଲୁଅ ଆସିନଥାଏ । ଗୋଟିଏ ବିଜ୍ଞାନ କଲେଜରେ କଳ୍ପନା କେତେ ଉଭଟ ଲାଗୁଛି ଆଜି । କିନ୍ତୁ ଇଚ୍ଛାଶକ୍ତି ଆଗରେ ଅସମ୍ଭବ ମଧ ସମ୍ଭବ ହୋଇଥାଏ । ତା'ର ଜ୍ୱଳନ୍ତ ଉଦାହରଣ ଆମ କଲେଜ ।

**ଆମ ଗାଁ ଓ ନନା:**

ବଡ଼ ପୋଖରୀର ଚାରିକୋଣରେ ଡ଼ିଆ ମୌଜାର ଚାରିସାହି । ନିରାକାରପୁର ଥାଏ ମୁଖ୍ୟ ବଜାର । ମଙ୍ଗଳବାର ଓ ଶନିବାର ହାଟ ବସେ । ସେତେବେଳେ ନିରାକାରପୁର ଥିଲା ଗୋଟିଏ ଗ୍ରାମ ପଞ୍ଚାୟତ, ଆଜିକି ଅଛି ସେଇଆ ।

ନନା ବୋଲଗଡ଼ ଛାଡ଼ି ନିରାକାରପୁର ଆସି ହାଇସ୍କୁଲର ପରିକଳ୍ପନା କରି ପ୍ରଥମେ ନିଜଘର କୃପାସିନ୍ଧୁଙ୍କର ରେଳ ଷ୍ଟେସନ ପାଖରେ ଥିବା ୩ ବଖରା ଚାଳଘରେ ଅଳ୍ପ କିଛି ପିଲାଙ୍କୁ ନେଇ ଆରମ୍ଭ କରନ୍ତି ହାଇସ୍କୁଲ । ରଘୁ ପଣ୍ଡିତେ ଓ ଆଉ ଜଣେ ଅଧ ଶିକ୍ଷକଙ୍କୁ ଧରି ଆରମ୍ଭ ହୁଏ ସ୍କୁଲ । ପରବର୍ତ୍ତୀ ସମୟରେ କ୍ଷେତ୍ରବାସୀ ରାଉତରାୟଙ୍କର ଆର୍ଥିକ ସହାୟତା, ଭୋଇସାହିର ପାର୍ବତୀ ମହାନ୍ତି, ବିଶ୍ୱନାଥ ବେହେରା ଆଦିଙ୍କର ଉତ୍ସର୍ଗ ଜମିରେ ଗଢ଼ିଉଠେ ହାଇସ୍କୁଲ ଘର । ନନାଙ୍କର ସହକାରୀ ଶିକ୍ଷକମାନଙ୍କ ମଧ୍ୟରୁ କୃଷ୍ଣଚନ୍ଦ୍ର ବଳିୟାର ସିଂ, ରବୀନ୍ଦ୍ରନାଥ ସିଂହଦେଓ, ସଦାଶିବ ରାଜଗୁରୁ ମହାପାତ୍ର, ପଣ୍ଡିତ ରଘୁନାଥ ମିଶ୍ର ଶର୍ମା, ନାରଣ ମିଶ୍ର, ନାରଣ ମହାପାତ୍ର, ପୀତବାସ ମିଶ୍ର ଇତ୍ୟାଦିମାନଙ୍କର ନାମ ଉଲ୍ଲେଖ ଯୋଗ୍ୟ । ସେ ଯାହା ହେଉ, କଲେଜ କଥା ବା ସ୍କୁଲ କଥା କିମ୍ବା ସ୍ଥାନୀୟ କିଛି ସମସ୍ୟା କଥା ହେଉ । ସମସ୍ତେ ଡ଼ିଆ ଗ୍ରାମକୁ ହିଁ ଆସୁଥିଲେ । ଜୟା କକେଇଙ୍କୁ ନନା ସ୍କୁଲର ସେକ୍ରେଟାରୀ କରାଇଥାନ୍ତି । ସ୍କୁଲର କିରାଣୀ ଥାଆନ୍ତି ଚିନ୍ତା କକେଇ । ବାଲୁ ବାରିକ ଓ ସର୍ବେଶ୍ୱର ଦାଶ ଥାଆନ୍ତି ସ୍କୁଲ ପିଅନ । କଲେଜର କିଛି ସମସ୍ୟା ହେଲେ କଥା ନନାଙ୍କ ପାଖକୁ ହିଁ ଆସେ । ଅଞ୍ଚଳର କିଛି ସମସ୍ୟା ହେଲେ, ଲୋକେ ନନାଙ୍କ ପାଖକୁ ନ୍ୟାୟ ପାଇଁ ଆସିଥାନ୍ତି । ମୋଟାମୋଟି ନନା ସଦାବେଳେ କିଛିନା କିଛି ଘଟଣାକୁ ନେଇ ଚିନ୍ତିତ ରହିବାଟା ଥିଲା ସ୍ୱାଭାବିକ କଥା ।

କିଆ ଗୋହିରୀକୁ ନିୟମିତ ରାସ୍ତାରେ ପରିଣତ କରିବାରେ ସେତେବେଳର ଜଣେ ତାନ୍ତ୍ରିକ ପ୍ରତିବନ୍ଧକ ସାଜି ଥାଏ । ଆମର ଥାନା ସେତେବେଳେ ଟାଙ୍ଗି ଥାଏ । ରକ୍ତପାତର ଧମକକୁ ନଡ଼ରି, ନନା, ଜୟା ଜକେଇ, ବିଶ୍ୱନାଥ ଦାଶ, ଓ ଆଉ କିଛି ବ୍ୟକ୍ତି ଯାଇ ପୋଲିସ ଉପସ୍ଥିତିରେ ରାସ୍ତାକାମ କରାଇଥିଲେ । ଏହା ଆମ ପିଲାଦିନର କଥା । ଗାଁ ପୋଖରୀରୁ ଦଳ ସଫା କରାଇବା, ପଙ୍କ ଉଦ୍ଧାର କରେଇବା ଇତ୍ୟାଦି କାର୍ଯ୍ୟ ମଧ ହାତକୁ

ନେଉଥିଲେ । ପୋଖରୀରେ ମାଛ ଚାଷ କରାଇ ସେଥିରୁ ସଂଗୃହୀତ ଅର୍ଥ ଗାଁ ସ୍କୁଲପାଣ୍ଠିକୁ ଯୋଗେଇବା, ଗାଁରେ ଲାଇବ୍ରେରୀ ଓ ଗାଁର ବୋର୍ଡ୍ ପରିଚାଳନାରେ ସହାୟତା କରିବା, ଶ୍ରୀ ଶ୍ରୀ କପିଳେଶ୍ୱର ଦେବଙ୍କର ଅଶୋକାଷ୍ଟମୀ ରଥଯାତ୍ରା, ଅନ୍ୟ ଯାନି ଯାତ୍ରାରେ ମୁଖ୍ୟ ଉପଦେଷ୍ଟା ଭାବେ ନିସ୍ୱାର୍ଥପର ଭାବେ ନନା କାମ କରୁଥିଲେ ।

ଆନନ୍ଦ ଭବନ, ଢ଼ିଆ



# ମୋ ଗାଁ, ମୋ ଜନ୍ମଭୂମି

ଶ୍ରୀ ବିଭୁ ପ୍ରସାଦ ରଥ

ମୋର ଛାତି ଗର୍ବରେ ଫୁଲି ଉଠେ, ଯେବେ ମୁଁ କାହାକୁ କହେ ଯେ ମୁଁ ଓଡ଼ିଆ ମାଟିରେ ଓ ରଥ ପରିବାରରେ ଜନ୍ମ ହୋଇଛି । ଯଦିଓ ମୋର ଗାଁକୁ ଯିବାଆସିବା ବହୁତ କମ୍ ତଥାପି ମୋର ଗାଁ ପ୍ରତି ସର୍ବଦା ଆକର୍ଷଣ ଥାଏ । ଗାଁରେ ସମସ୍ତଙ୍କ ମଧ୍ୟରେ ଆତ୍ମୀୟତା ବଡ଼ମାନଙ୍କୁ ସମ୍ମାନ, ସାନମାନଙ୍କୁ ସ୍ନେହଭାବ ମୋତେ ସର୍ବଦା ଅଭିଭୂତ କରେ । ଗାଁରେ ରଥ ପରିବାରର ରକ୍ତସମ୍ପର୍କ କିଏ କାହାର ଭାଇନା, ଭାଇ, ଭାଉଜ, ଦିଅର, ଦଦେଇ, କକେଇ, ଦେଠେଇ, ଖୁଡ଼ୀ, ଦେଢ଼ଶୁର, ନାନୀ ଇତ୍ୟାଦି । ଗାଁରେ ରଥ ପରିବାର ଏକ ଆଦର୍ଶ, ସମ୍ଭ୍ରାନ୍ତ ପରିବାର । ଏକଦା ଧନସମ୍ପତ୍ତି ଗୋପଲକ୍ଷ୍ମୀରେ ଭରପୂର ଥିଲା । ଅବଶ୍ୟ ବର୍ତ୍ତମାନ ତାହା ହ୍ରାସ ପାଇଛି । ଗାଁର ବାତାବରଣ, ଜଳବାୟୁ ଓ ଖାଦ୍ୟପେୟର ନିର୍ମଳତା ଥାଏ । ମୁଁ ଯେବେବି ଗାଁକୁ ଆସେ ମୋତେ ସବୁବେଳେ ଲାଗେ ମୁଁ ମୋର ପୂର୍ବପୁରୁଷଙ୍କ ସ୍ଥାନକୁ ଆସିଛି ।

ମୋର ଏବେବି ମନେଅଛି ପିଲାବେଳେ ନନା ଓ ବୋଉଙ୍କ ସାଙ୍ଗରେ ଆମେ ପବିତ୍ର ଅଶୋକାଷ୍ଟମୀରେ ଗାଁକୁ ଆସୁଥିଲୁ । ଆମ ଗାଁ ଦାଣ୍ଡଦେଇ ଠାକୁରମାନେ ଚଉଦୋଳରେ ପଟୁଆରରେ ଯାଉଥିଲେ । ଠାକୁରମାନେ ଗଲାବେଳେ ବିଭିନ୍ନ ବେଷପୋଷାକ ପଟୁଆର ଯାଉଥିଲା । ଆମେ ରାତ୍ରି ଅନିଦ୍ରା ହୋଇ ଠାକୁର ଆସିବାକୁ ଆଗ୍ରହର ସହ ଅପେକ୍ଷା କରି ରହୁଥିଲୁ । ଆମଘର ଦୁଆରରେ ଭୋଗ ବଢ଼ାହେଉଥିଲା ଓ ଠାକୁରମାନଙ୍କୁ ଅର୍ପଣ କରାହେଉଥିଲା । ପ୍ରତି ଘରେ ଦୁଆରେ ଠାକୁରମାନଙ୍କୁ ଚାଟେରୀ ଭୋଗ ଲାଗି ହୁଏ । ବିଭିନ୍ନ ପ୍ରକାର ବାଜାରେ ଗାଁ ଦାଣ୍ଡ ପ୍ରକମ୍ପିତ ହୋଇ ଉଠେ । ଠାକୁର ମାନଙ୍କର ବାହୁଡ଼ା ଯାତ୍ରାରେ ଭେଟ ବାଲିରେ ପହଞ୍ଚିଲା ପରେ ବାଣ ଭୋଗହୁଏ । ତାପରେ ବିଭିନ୍ନ ପ୍ରକାର ଆତସବାଜିର ପ୍ରତିଯୋଗିତା ହୁଏ । ଏହାକୁ ଦେଖିବାକୁ ଆଖପାଖ ଗାଁରୁ ଲୋକମାନେ ଏକତ୍ରିତ ହୁଅନ୍ତି ଓ ବାଣ ଫୁଟାଇ ମଜା ନିଅନ୍ତି ।

ମୋ ଜୀବନକାଳରେ ମୁଁ ସବୁବେଳେ ଘରୁ ବାହାରେ ରହିଲି । ମୋର ସ୍କୁଲ ୫ମ ଶ୍ରେଣୀରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ମୁଁ ଘରୁ ବାହାରେ ରହିଲି । କେବଳ ଘରକୁ ଛୁଟୀରେ

ଆସେ ଅଳ୍ପଦିନ ପାଇଁ । ତେଣୁ ମୋତେ ଗାଁର ପର୍ବପର୍ବାଣୀ ପରିବାରର ଏକତ୍ର ମିଳନରେ ଯୋଗଦେବାକୁ ସୁଯୋଗ ମିଳେନି ।

ମୋ ବାହାଘର ୧୯୮୬ ମସିହାରେ ହୋଇଥିଲା । ୧୯୮୭ ମୋର ପୁଅ ବବ୍ଲୁ (ବିଭାଷ) ଜନ୍ମ ହୋଇଥିଲା । ୧୯୯୨ରେ ମୋ ଝିଅ ତିତିଲି (ବୈଶାଳି) ଜନ୍ମ ହୋଇଥିଲା । ଆମେ ସବୁବେଳେ ନିଜକୁ ଭାଗ୍ୟବାନ ମନେ କରୁଥିଲୁ କି ଭଗବାନ ଆମକୁ ଏକ ସମ୍ପୂର୍ଣ୍ଣ ପରିବାର ଦେଇଛନ୍ତି ।

ମୋ ପୁଅ ବବ୍ଲୁ 12th ପାସ କଲା ପରେ ନିଜେ ଚାହିଁଲା commercial ପାଇଲଟ ହେବାକୁ । ଆମେ ତାକୁ ଫ୍ଲୋରିଡ଼ା ଯୁକ୍ତରାଷ୍ଟ୍ର ଆମେରିକାରେ ପାଠ ପଢ଼ିବାକୁ ପଠେଇଲୁ । ପାଠ ସମ୍ପୂର୍ଣ୍ଣ କରି ୨୦୦୮ରେ ଆମ ପାଖକୁ ବମ୍ବେ ଛୁଟୀରେ ଆସିଥିଲା । ଏପ୍ରିଲ ୪ତାରିଖ ଦିନ ପୁଣି ତାର ଫ୍ଲୋରିଡ଼ା ଯିବାର ଥିଲା advanced course କରିବାକୁ । କିନ୍ତୁ ଭଗବାନ ଆମପାଇଁ ଏକ ବୋମା ପ୍ରସ୍ତୁତ କରି ରଖିଥିଲେ ।

ମାର୍ଚ୍ଚ ୨୭ତାରିଖରେ ରାସ୍ତା ଦୁର୍ଘଟଣାର ସମ୍ମୁଖୀନ ହୋଇ ଆମ ପୁଅର ଅକାଳ ବିୟୋଗ ହେଲା । ତାକୁ ଆମେ ଚିରଦିନ ପାଇଁ ଆଉ ଦେଖିବାକୁ ପାଇବୁନି ଓ ତାର ଡ଼ାକ ଶୁଣିବାକୁ ପାଇବୁନି । ଆମ ଉପରେ ଏକ ବଜ୍ରପାତ ହେଲା । ଆମକୁ ଏପରି ଶକ୍ତ ଧକ୍କା ଲାଗିଲା ଯେ ଆମେ ଆମର ମାନସିକ ଭାରସାମ୍ୟ ହରେଇ ବସିଲୁ । ଆମେ ସମ୍ପୂର୍ଣ୍ଣ ଭାବେ ଭାଙ୍ଗିପଡ଼ିଲୁ ଆମକୁ ଇଛାହେଉଥିଲା ଯଦି ଇଶ୍ୱର ଆମକୁ ଆରପାରିକୁ ନେଇଯାନ୍ତେ ତେବେ ଭାରି ଭଲହୁଅନ୍ତା ।

ମୋ ଝିଅ ତିତିଲି ଯୋଗୁଁ ଆମେମାନେ ଅନେକ ମାତ୍ରାରେ ସମ୍ଭାଳିଗଲୁ । ସେ ମଧ୍ୟ ତାର ପ୍ରିୟ ଭାଇକୁ ସବୁଦିନ ପାଇଁ ହରେଇ ବସିଲା । କିନ୍ତୁ ଏହି ଦୁର୍ଘଟଣା ପରେ ସେ ଦୃଢ଼ ଓ ପରିପକ୍ୱ ହୋଇଗଲା । ଆମେ ଆମ ଝିଅ ତିତିଲି ପାଇଁ ପୁଣି ଥରେ ବଞ୍ଚିବା ପାଇଁ ସାହାସ ଯୋଗାଡ଼ କରିପାରିଲୁ । ଆମ ପାଇଁ ବମ୍ବେ ସ୍ଥାନ ପରିବର୍ତ୍ତନର ଏକାନ୍ତ ଆବଶ୍ୟକତା ଥିଲା । ତିତିଲି ବମ୍ବେ ଛାଡ଼ି ପୁନେରେ ହଷ୍ଟେଲରେ ରହି ବିଡ଼ିଏସ୍ କରୁଛି Dental Doctor ହୋଇ ବାହାରିବ । ଆମେ ବମ୍ବେ ପରିତ୍ୟାଗ କରି ମୋର ୩୦ବର୍ଷର ଓ.ଏନ୍.ଜି.ସି ଚାକିରି ଛାଡ଼ି (Gulf Country) ଆବୁଧାବିରେ ଏକ Government Oil Company ରେ ଚାକିରିରେ

ଯୋଗଦେଲି । ମୋ ସ୍ତ୍ରୀ ବିଦ୍ୟା ମଧ୍ୟ ଆବୁଧାବିର ଏକ ଭାରତୀୟ ସ୍କୁଲରେ ଶିକ୍ଷକତା କରୁଛି ।

ବହୁବର୍ଷ ପରେ ମୋତେ ଏଥର ଗ୍ରୀଷ୍ମ ଛୁଟୀରେ ଡ଼ିଆଗାଁକୁ ଯିବାକୁ ସୁଯୋଗ ମିଳିଲା । ମୁଁ ମୋର ବଡ଼ ଭାଇନା, ମଣ୍ଟୁ, ଝିଅ, ପୁଅ ନେହା ଓ ଓଁମ ସଙ୍ଗରେ ଗାଁକୁ ଯାଇଥିଲି । ମୋର ବିଶୁ ଭାଇନା, ବଡ଼ ଭାଉଜ ଓ କଲ୍ୟାଣୀ ନାନୀଙ୍କ ସହିତ ସାକ୍ଷାତ ଆଲୋଚନା ହୋଇଥିଲା । ସମସ୍ତଙ୍କ ସାଙ୍ଗେ ଦେଖାହେବାରୁ ମୋତେ ବହୁତ ଆନନ୍ଦ ମିଳିଲା । ଶ୍ରୀ ଶ୍ରୀ କପିଳେଶ୍ୱର ମନ୍ଦିରକୁ ମୁଁ ଯାଇଥିଲି ଓ ଠାକୁରଙ୍କୁ ଦର୍ଶନ କଲି । ମନ୍ଦିର ପୁଷ୍କରଣୀ ଓ ବଡ଼ପୋଖରୀ ଦୁରବସ୍ଥା କହିଲେ ନସରେ । ବୃହତ ରଥ ପରିବାର ପକ୍ଷରୁ ମନ୍ଦିର, ଗାଁର, ପୁଷ୍କରଣୀର ଉନ୍ନତି ପାଇଁ ଆନ୍ତରିକ ଉଦ୍ୟମ ହେଉ । ଗାଁର ବଡ଼ ଦଦେଇ, ମଝିଆ ଦଦେଇ, ସାନ ଦଦେଇ, ମୋର ନନା, ତିନି ଦେଠେଇ ଓ ମୋର ବୋଉ ମୋର ଏକାନ୍ତ ପୂଜ୍ୟ । ସେମାନେ ଯୋଗଜନ୍ମା । ବର୍ତ୍ତମାନ ସେମାନେ ଇହଧାମରେ ନାହାନ୍ତି । କେବଳ ସେଇ ପିଢ଼ୀର ମୋର ବୋଉ ଏକମାତ୍ର ଜୀବିତ । ପୁରୀ ଦଦେଇଙ୍କ ସାଙ୍ଗରେ ଆମର ସମ୍ପର୍କ ଅତି ଘନିଷ୍ଠ କାରଣ ଆମେ ପୁରୀ ରେଲୱେ କଲୋନୀ ଓ ରାମଚଣ୍ଡୀ ସାହିସ୍ଥିତ ଆମଘରେ ରହୁଥିଲୁ । ସଦାବେଳେ ପୁରୀ ଦଦେଇ ଓ ଦେଠେଇଙ୍କ ସାଙ୍ଗରେ ଦେଖାହୁଏ । ଦଦେଇ ଓ ଦେଠେଇଙ୍କ ସ୍ନେହ ଭୁଲିହେବନି । ମୋର ପିଲାବେଳେ ପୁରୀ ରାମଚଣ୍ଡୀ ସାହି ଓ ରେଲବାଇ କଲୋନୀରେ କଟିଛି । ପୁରୀ ଦଦେଇଙ୍କ ହୋମିଓପାଥି ଔଷଧ ମୋର ବହୁତ ଅସାଧ ରୋଗକୁ ଭଲ କରିଛି । ଦଦେଇଙ୍କ ଔଷଧ ମନ୍ତ୍ରପରି କାମକରେ । ଦଦେଇଙ୍କ ଏକ ପୁରୁଣା ଠେଲାଗାଡ଼ିରେ ପିଲାବେଳେ ଖେଳି ଆମ ସମୟ କଟିଛି । ଆମେ ପୁରୀ ରାମଚଣ୍ଡୀ ସାହିରେ ଥିବାବେଳେ ଗାଁର ଦାଣ୍ଡବାଡ଼ି ପୋଖରିରୁ ମାଛ ଆସେ । ମୋର ଭାଇନା ତୋଟାରୁ ଆମ୍ବ, ପଣସ, ସପୁରୀ, ନଡ଼ିଆ, ପଇଡ଼, ଜାମରୁଲ ଓ ପିଜୁଳି ତୋଳି ଆଣନ୍ତି । ଆମେ ତାକୁ ଖାଇଛୁ । ଏହିସବୁ ଫଳ ଭାରି ସୁଆଦିଆ । ଟିଟୁ ପୁରୀ ଦଦେଇଙ୍କ ଦୋଳମଣ୍ଡପ ସାହିସ୍ଥିତ ଦୋକାନକୁ ଆମର ନାରଣ କକେଇଙ୍କ ସଙ୍ଗେ ଯାଇଥିଲା । ଦୋକାନରୁ ସେ ଖସି ପଳାଇ ଏକୁଟିଆ ଚାଲି ଚାଲି ଯାଉଥିଲା । ତାକୁ ଜଣେ ପାଇ ପୋଲିସ ଷ୍ଟେସନରେ ପହଞ୍ଚେଇ ଦେଇଥିଲେ । ପୁରୀ ଦଦେଇ ଜାଣିଲା ପରେ ଅତ୍ୟନ୍ତ ବ୍ୟସ୍ତ ବିବ୍ରତ ହୋଇ ଖୋଜାଖୋଜି ପରେ ପୁଲିସ୍ ଷ୍ଟେସନରେ ପାଇଥିଲେ । ବର୍ତ୍ତମାନ ଏସବୁ ସ୍ମୃତିରେ ରହି ଯାଇଛି ।

ବର୍ତ୍ତମାନ ଦ୍ୱିତୀୟ ପିଢ଼ୀର ସମୟ ଅତିକ୍ରାନ୍ତ ହୋଇଗଲାଣି । ଜୀବନ ଏକ ରଙ୍ଗମଞ୍ଚ । ଯେ ଯାହାର ଅଭିନୟ ସାରି ଚିରବିଦାୟ ନେବେ । ଶରୀର ନଶ୍ୱର । ପରବର୍ତ୍ତୀ ତୃତୀୟ ପିଢ଼ୀ ଯେ ଯାହାର କର୍ମକ୍ଷେତ୍ରରେ ଅବସ୍ଥାପିତ । ସେମାନେ ବୃହତ ରଥ ପରିବାରର ଅଂଶବିଶେଷ । ସେମାନେ ରଥପରିବାର ସମ୍ମାନ, ଆଭିଜାତ୍ୟ ବଜାଇ ରଖନ୍ତୁ । ରଥ ପରିବାରର ପରମ୍ପରାରେ ଆଞ୍ଚ ନ ଆସୁ । ସେମାନେ ଦୀର୍ଘଜିବୀ ହୁଅନ୍ତୁ ଓ ସେମାନଙ୍କ ଭବିଷ୍ୟତ ଉଜ୍ଜ୍ୱଳ ହେଉ । ଏତିକି ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା ।

ଆବୁଧାବି U.A.E

ମୋ--+୯୭୧୫୫୬୧୮୭୩୦୯



# ଗୋପାଳ ମୂର୍ତ୍ତି ଗଲେ କୁଆଡ଼େ

ଶ୍ରୀ ସତ୍ୟନାରାୟଣ ରଥ

୧୯୮୦ ମସିହା କଥା । ଆମ ଘରେ ପୁରୀରେ ଚୋରି ହୋଇଗଲା । ଘରେ ଥିବା ସମସ୍ତ ପୁରୁଣା କଂସାବାସନ ତଥା ଅନ୍ୟାନ୍ୟ କିଛି ଜିନିଷ ଚୋରି ହୋଇଗଲା । ସେତେବେଳକୁ ନନାଙ୍କ ଦେହାନ୍ତ ହୋଇଯାଇଥାଏ । ନନା ଖାଉଥିବା ମୋଟା କଂସାଥାଳିଆ ମଧ ସବୁ ଜିନିଷ ସହିତ ଚୋରି ହୋଇଗଲା । ମୁଁ ଆଉ କଂସା ବାସନ ବ୍ୟବହାର ନକରି ଷ୍ଟିଲଟ୍ରେ ଓ ଷ୍ଟିଲର ଥାଳି ଇତ୍ୟାଦି କିଣି ବ୍ୟବହାର କଲି । ପ୍ରାୟ ବର୍ଷ ପରେ ପୁଣି ଆମଘରେ ଚୋରି ହୋଇଗଲା । ଏଥର କିନ୍ତୁ ଚୋର ଷ୍ଟିଲ୍ ବାସନ ନେଲାନାହିଁ, କାରଣ ତାର କୌଣସି ବଦଳ ମୂଲ୍ୟ ନଥିଲା । ସାର୍ଟ ପ୍ୟାଣ୍ଟ ଓ ଅନ୍ୟାନ୍ୟ ଜିନିଷ ଚୋରି ହୋଇଗଲା । ଆମ ଘର ବାଡ଼ିପଟୁ ଖୋଲାଥିଲା ଓ ଚୋରି କରିବା ବହୁତ ସହଜ ଥିଲା । ତାଛଡ଼ା ଆମ ଘର କାଳିଆ କୁକୁରଟି ମରିଯାଇଥିଲା । ବାରମ୍ବାର ଚୋରି ହେବାରୁ ଏଥର କିନ୍ତୁ ବହୁତ ଭୟ ଲାଗିଲା । ମୋର ଜଣେ ବନ୍ଧୁ କହିଲେ ଘରେ ବାସ୍ତୁ ଦୋଷ ଥିବାରୁ ବୋଧେ ଚୋରି ହେଉଛି । ତେଣୁ ତୁମେ ଜଣେ ବାସ୍ତୁବିଦଙ୍କଠାରୁ ପରାମର୍ଶ ନିଅ ।

ଆମ ଅଫିସରେ ମୋର ଜଣେ ବନ୍ଧୁଙ୍କ କଳା ଶ୍ରୀ ହରେକୃଷ୍ଣ ସିହ୍ନା (Divine Geologist) ଗୋପ (ନିମାପଡ଼ା ପାଖରେ ଥିବା ଏକ ଗାଁ) ପାଖରେ ମଲ୍ଲିକ୍ ସାହୀ ଗ୍ରାମରେ ରହୁଥିଲେ । ମୁଁ ସେତେବେଳେ ବାସ୍ତୁଶାସ୍ତ୍ର ବିଷୟରେ କିଛି ଜାଣିନଥାଏ । ତେଣୁ ମୁଁ ମୋର ବନ୍ଧୁ ବିଭୁତିକୁ ମୋର ରାଜଦୁତ୍ ମଟର ସାଇକେଲରେ ଧରି ସେଠାରେ ପହଞ୍ଚିଲି । ସକାଳ ପ୍ରାୟ ୯ଟା ସମୟ । ସାଧାରଣ ମାଟି ଚାଳଘରେ ଶ୍ରୀଯୁକ୍ତ ସିହ୍ନା ତାଙ୍କ ପରିବାର ସହିତ ରହୁଥିଲେ । ତାଙ୍କ ଘର ଆଗରେ ପ୍ରାୟ ୫୦ଜଣ ଲୋକ ନିଜ ନିଜର ସମସ୍ୟା ନେଇ ଆଲୋଚନା କରିବାକୁ ଅପେକ୍ଷା କରିଥିଲେ । ସେ ପରାମର୍ଶ ପାଇଁ କିଛି ପଇସା ନେଉନଥିଲେ । କାରଣ ତାଙ୍କର ଗୁରୁଙ୍କର ସେହିଭଳି ନିର୍ଦ୍ଦେଶ ଥିଲା । କିନ୍ତୁ ଯେଉଁମାନେ ଆସିଥିଲେ ତାଙ୍କୁ ଚା ଓ ସର୍ବତରେ ଆପ୍ୟାୟିତ କରୁଥିଲେ ।

କିଛି ସମୟପରେ ମୋର ପାଳି ପଡ଼ିଲା । ସେ ମୋତେ ପାଖକୁ ଡ଼ାକି ଗୋଟେ ଟୁଲରେ ବସିବାକୁ କହିଲେ । ମତେ ଦେଖି କହିଲେ ମୁଁ ତୁମ ରଥ ପରିବାରର ଦଶ ପୁରୁଷଙ୍କ

ନାମ କହିପାରିବି । ତମ ଘରୁ ଗୋପାଳ ମୂର୍ତ୍ତି କୁଆଡ଼େ ଗଲେ ? ତୁମ ପରିବାରର ସ୍ତ୍ରୀ ଲୋକମାନେ ପୁରୁଷ ଲୋକଙ୍କ ଅପେକ୍ଷା ଚାଲାକ । ମୁଁ କିଛି ବୁଝି ପାରୁନଥାଏ । ପଚାରିଲେ କୁଆଡ଼େ ଆସିଛ । ମୁଁ କହିଲି ଘରେ ବାରମ୍ବାର ଚୋରି ହେଉଛି । ତେଣୁ ପ୍ରତିକାର ପାଇଁ ଆପଣଙ୍କ ସହିତ ପରାମର୍ଶ ପାଇଁ ଆସିଛି । ମୁଁ ନେଇଥିବା ଘରର ନକ୍ସା ଦେଖି ଦୁଇଟି ଜାଗାରୁ ମାଟି ପରିକ୍ଷା ପାଇଁ ଆଣିବା ପାଇଁ ନିର୍ଦ୍ଦେଶ ଦେଲେ । ସେ ମାଟିକୁ ଶୁଙ୍ଘି ମାଟିର ଗୁଣ ନିର୍ଣ୍ଣୟକରି ପ୍ରତିକାରପାଇଁ ପରାମର୍ଶ ଦେଉଥିଲେ । ଫେରିବାକୁ ଆସିବାବେଳକୁ ପଚାରିଲେ ଗୋପାଳମୂର୍ତ୍ତି ଗଲେ କୁଆଡ଼େ ? ମୁଁ କହିଲି ପୁରୀରେ । ଆମ ଘରେ ଗୁରୁଣ୍ଡି ଗୋପାଳ ପୂଜା ହେଉଛନ୍ତି, ସେ କହିଲେ ସେ ମୂର୍ତ୍ତି ନୁହନ୍ତି, ବଡ଼ ଗୋପାଳ ମୂର୍ତ୍ତିଙ୍କ କଥା ମୁଁ କହୁଛି, ତୁମେ ଘରେ ପଚାରିବ, ମୋର ସମୟ ସରିଯାଇଥିଲା । ଅନ୍ୟାନ୍ୟ ବହୁତ ଲୋକ ଅପେକ୍ଷା କରିଥିଲେ ।

ମୁଁ ପ୍ରଥମେ ଆସି ବୋଉକୁ ଗୋପାଳମୂର୍ତ୍ତି ବିଷୟରେ ପଚାରିଲି । କିନ୍ତୁ ସେ କିଛି ଜାଣି ନଥିଲା, ବୋଉ ଓ ସାନଖୁଡ଼ୀ ଗାଁରେ ରହୁନଥିଲେ । ତେଣୁ ଗାଁକୁ ଯାଇ ଦେଠେଇ ଓ ବଡ଼ଖୁଡ଼ୀଙ୍କୁ ପଚାରିଲି । ଦେଠେଇ ଗୋପାଳମୂର୍ତ୍ତିଙ୍କ ବିଷୟରେ ଜାଣିଥିଲେ ।

ନନାଙ୍କ ଚାରି ଭାଇଙ୍କ ମଧ୍ୟରୋ ଜଣେ ଭଉଣୀ (ସେବତୀ ଦେବୀ) ଥିଲେ । ସେବତୀ ନାନୀଙ୍କ ବାହାଘର ପାଇଁ ଦୁଇଜଣ ପାତ୍ର ମନୋନୀତ ହୋଇଥିଲେ । ପ୍ରଥମ ପାତ୍ର ମାଟ୍ରିକ୍ ପାଶ୍ କରିଥିବା ବେଳେ ତାଙ୍କ କିଛି ଜମିବାଡ଼ି ନଥିଲା । ଦ୍ୱିତୀୟ ପାତ୍ର ନରସିଂହ ଆଚାର୍ଯ୍ୟଙ୍କର ଶିକ୍ଷାଗତ ଯୋଗ୍ୟତା ନଥିଲେ ମଧ୍ୟ ପ୍ରଚୁର ଜମିବାଡ଼ି ସହିତ ହାତୀ ମଧ୍ୟ ଥିଲା । ବାପା (ବନମାଳୀ ରଥ) ଇଂରାଜୀ ଶିକ୍ଷାର ସପକ୍ଷରେ ଥିବାରୁ ମାଟ୍ରିକ୍ ପାଶ କରିଥିବା ଯୁବକଙ୍କୁ ପ୍ରଥମେ ମନୋନୀତ କରିଥିଲେ । କିନ୍ତୁ ମା (ମଣିଦେବୀ) ଘୋର ବିରୋଧ କଲେ ଓ ସେ  ପିଲାର ଜମିବାଡ଼ି ନଥିବାରୁ ସେଠାରେ ବାହାଘର ନ କରିବାକୁ ଜିଦ୍ ଧରିବସିଲେ । ଘରେ ଦୁଆର କିଳି, ନ ଖାଇ ନ ପିଇ ରହିଲେ । ଶେଷରେ ବାପା ନରସିଂହ ଆଚାର୍ଯ୍ୟଙ୍କୁ ଜ୍ୱାଇଁ କରିବାକୁ ସମ୍ମତ ହେଲେ ।

ନରସିଂହ ଆଚାର୍ଯ୍ୟ ବରଯାତ୍ରୀ ସହ (ହାତୀ ସହିତ) ବିରାଟ ଶୋଭାଯାତ୍ରାରେ ଆସି ସେବତୀ ନାନୀଙ୍କୁ ବିବାହ କଲେ । ସେତେବେଳ ପ୍ରଥା ଅନୁସାରେ ବରଯାତ୍ରୀମାନେ

କନ୍ୟାଘରୁ କିଛି ଜିନିଷ ଚୋରିକରି ନେଉଥିଲେ । ବରଯାତ୍ରୀ ବିଦା ହେଲାପରେ ବାପା ଦେଖିଲେ ବରଯାତ୍ରୀମାନେ ଦିଅଁଘରୁ ଲକ୍ଷ୍ମୀ ମୂର୍ତ୍ତି ଚୋରିକରି ନେଇଛନ୍ତି । ସେତେବେଳକୁ ବରଯାତ୍ରୀମାନେ ବିଦାୟ ହୋଇ ନିରାକାରପୁରଠାରେ ବିଶ୍ରାମ କରୁଥାନ୍ତି ।

ବାପା କିନ୍ତୁ ଆଦୌ ବ୍ୟସ୍ତ ହେଲେନାହିଁ । ସେ କହିଲେ ମୁଁ ଝିଅଙ୍କୁ କନ୍ୟାଦାନ କରିଛି, ଯଦି ଲକ୍ଷ୍ମୀ ମୂର୍ତ୍ତି ସେ ଯଦି ନେଇଛନ୍ତି ତାଙ୍କ ଘରେ ରଖି ପୂଜା କରିବେ । କିଛି ଲୋକ କହିଲେ ସେ ଯଦି ଲକ୍ଷ୍ମୀମୂର୍ତ୍ତି ନେଇଛନ୍ତି ତାଙ୍କୁ ନାରାୟଣ ମୂର୍ତ୍ତି ଦେଇ ଆସନ୍ତୁ କାରଣ ଲକ୍ଷ୍ମୀ ନାରାୟଣ ଏକାଠି ପୂଜା ପାଇବା କଥା । ଏଥର ଗ୍ରାମର ବ୍ରାହ୍ମଣମାନଙ୍କୁ ଡ଼ାକି ପରାମର୍ଶ ନିଆଗଲା, ବ୍ରାହ୍ମଣମାନେ କହିଲେ ଲକ୍ଷ୍ମୀ ଓ ନାରାୟଣ ମୂର୍ତ୍ତି ସ୍ଥାନାନ୍ତରିତ ନହୋଇ ଯେମିତି ପୂଜା ପାଉଥିଲେ ସେପରି ଏଠାରେ ପୂଜା ପାଆନ୍ତୁ । ତାଙ୍କଠାରୁ ଲକ୍ଷ୍ମୀମୂର୍ତ୍ତି ଫେରାଇ ଆଣନ୍ତୁ । ତା ବଦଳରେ ଗୋପାଳ ମୂର୍ତ୍ତି ତାଙ୍କୁ ପ୍ରଦାନ କରନ୍ତୁ । ସେ ତାଙ୍କ ଘରେ ରଖି ପୂଜା କରିବେ । ବରଯାତ୍ରୀ ବେଶୀ ଦୂର ଯାଇନଥିଲେ । ସେମାନଙ୍କୁ ଖବର ଦିଆଗଲା, ସେମାନେ ମହାଆନନ୍ଦରେ ଗୋପାଳ ମୂର୍ତ୍ତିକୁ ଗ୍ରହଣ କରି ଲକ୍ଷ୍ମୀମୂର୍ତ୍ତିକୁ ଫେରାଇ ତ୍ରିଲୋଚନପୁର ପ୍ରସ୍ଥାନ କଲେ ।

ବର୍ତ୍ତମାନ ଗୋପାଳ ମୂର୍ତ୍ତି କୁଆଡ଼େ ଗଲେ ମୁଁ ପ୍ରାୟ ଜାଣିପାରିଲି, ମୋର ଆଗ୍ରହ ବଢ଼ି ଚାଲିଲା । ମୁଁ ସମୟ ପାଇଲେ ବାରମ୍ବାର ଶ୍ରୀ ହରେକୃଷ୍ଣ ସିହ୍ନା (Divine Geologist) ଙ୍କ ପାଖକୁ ଯାଉଥିଲି । ପୁଣି ସେ ଗୋପାଳ ମୂର୍ତ୍ତିଙ୍କ ବିଷୟରେ ବଡ଼ ଆଶ୍ଚର୍ଯ୍ୟ ଜନକ କଥା କହିଲେ । ଗୋପାଳ ମୂର୍ତ୍ତି ଯେଉଁଠି ଅଛନ୍ତି ସେଠାରେ ପୂଜା ପାଉନାହାନ୍ତି । ସେ ମୂର୍ତ୍ତି ତୁମ ପରିବାରକୁ ପୁଣି ଫେରିବେ ।

ଏହା ମଧ୍ୟରେ ଆମ ଘର (ପୁରୀ, ରାମଚଣ୍ଡୀ ସାହି)ରେ ତାଙ୍କ ପରାମର୍ଶ ଅନୁସାରେ କିଛି ବାସ୍ତୁଦୋଷର ପ୍ରତିକାର ମଧ କହିଥିଲି । କିନ୍ତୁ ସେ କହିଲେ ତୁମର () ଘର ଯେଉଁ ଗାଁରେ ଅଛି ସେଠାରୁ ମାଟି ଆଣି ପୂଜା କରିବା ଦରକାର । କାରଣ ସେହି ମାଟି ତୁମ ପରିବାରକୁ ଅନ୍ୟ ଭୂମିପ୍ରାପ୍ତି କରାଇଛି । ତାଙ୍କ ନିର୍ଦ୍ଦେଶମତେ ମୁଁ ଡ଼ିଆ ଗାଁ ଘର ଓ ନିରାକାର ପୁର (ଗୋରଡ଼ି) ଘରୁ ମାଟି ନେଇ ପରୀକ୍ଷା କରାଇ ବାସ୍ତୁ ପୂଜା କରାଇଥିଲି ।

କିନ୍ତୁ ମୋର ପୂର୍ବପୁରୁଷ, ପରିବାର ଓ ଗୋପାଳ ମୂର୍ତ୍ତିଙ୍କ ବିଷୟରେ ଜାଣିବା ପାଇଁ ଆଗ୍ରହ ହେତୁ ମୁଁ ବାରମ୍ବାର ଯାଉଥିଲି । ସବୁବେଳେ ଗହଳିଯୋଗୁ ମୋତେ ସୁଯୋଗ

ମିଳୁନଥିଲା । ଅନେକ ଥର ମୋର ପାଳି ନପଡ଼ିବାରୁ ଫେରିବାକୁ ପଡ଼ିଛି । ତାଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ ହୋଇଥିଲା । ତାଙ୍କ ପୁତୁରା ମୋର ବନ୍ଧୁ ଥିବାରୁ ତାଙ୍କ ଘରେ ମୁଁ ଅନେକଥର ଖାଇଛି । ମୁଁ ତାଙ୍କ ଘରକୁ ମିଠା ନେଇଗଲେ ସେ ଗ୍ରହଣ କରୁନଥିଲେ । ତାଙ୍କର ଅନେକ କଥା ମୁଁ ବିଶ୍ୱାସ କରୁନଥିଲି ଓ ହସି ଦେଉଥିଲି । ସେ ମୋତେ ଥରେ କହିଲେ ବର୍ତ୍ତମାନ ତୁମେ ମୋ କଥା ବିଶ୍ୱାସ କରୁନାହଁ କିନ୍ତୁ ଭବିଷ୍ୟତରେ ଯେତେବେଳେ ସବୁକଥା ସତହେବ ସେତେବେଳେ ତୁମେ ମତେ ବହୁତ ଖୋଜିବ କିନ୍ତୁ ସେତେବେଳେକୁ ମୁଁ ମରିଯାଇଥିବ ।

ତାଙ୍କର ଅନେକ ଭବିଷ୍ୟତ ବାଣୀ ମୁଁ ବୁଝିପାରୁନଥିଲି ଅର୍ଥାତ୍ ବୁଝିବାକୁ ସମୟ ଲାଗୁଥିଲା । ଥରେ ମୋତେ ପଚାରିଲେ ତୁମ ପରିବାରରେ ସମସ୍ତେ ଶିକ୍ଷିତ । କିନ୍ତୁ ଏ କି ପରମ୍ପରା ଚାଲିଛି । ସମସ୍ତେ ଅନ୍ଧଭାବରେ ସେ ପରମ୍ପରାକୁ ମାନି ଚାଲିଛନ୍ତି । ଏ ପରମ୍ପରା ହୁଏତ କିଛି Generation ପୂର୍ବରୁ ଯିଏ ପ୍ରଚଳିତ କରିଥିଲେ ତାହାର ଆବଶ୍ୟକତା ହୁଏତ ସେତେବେଳେ ଥିଲା । ବର୍ତ୍ତମାନ ତାହାର କୌଣସି ଆବଶ୍ୟକତା ନାହିଁ । ମୁଁ କିଛି ବୁଝିପାରୁନଥାଏ । ତେଣୁ କହିଲି ଦୟାକରି ମତେ ବୁଝାଇ ଦିଅନ୍ତୁ ମୁଁ କିଛି ଜାଣିପାରୁନାହିଁ । ସେ କହିଲେ ସମସ୍ତେ ଯାହା କରୁଛନ୍ତି ତୁମେ ଯଦି ସେହିଭଳି ପରମ୍ପରାକୁ ମାନିବ ତୁମର ଓ ଅନ୍ୟମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ରହିବନାହିଁ । ତଥାପି କିଛି ବୁଝିହେଲାନାହିଁ । ସେଦିନ ସମୟ ଅଭାବରୁ ଏ ବିଷୟରେ ଆଉ ଆଲୋଚନା କରିହେଲାନାହିଁ ।

ଗୋପାଳମୂର୍ତ୍ତି ପୂଜା ପାଉନାହାନ୍ତି ଓ ସେ ଆମ ପରିବାରକୁ ଫେରିବେ । କିନ୍ତୁ କେମିତି ଫେରିବେ, ସେଥିପାଇଁ ଆମର ଉଦ୍ୟମ ଦରକାର । ମୁଁ ଗାଁରେ ଆସି ଦଦେଇ ଦେଠେଇଙ୍କୁ ଏକଥା କହିଲି । ଗୋପାଳମୂର୍ତ୍ତି ପୂଜା ପାଉନାହାନ୍ତି ଶୁଣି ସେମାନେ ବ୍ୟସ୍ତ ହେଲେ । ତାପରେ ନିରାକାରପୁର ଯାଇ ବଡ଼ଖୁଡ଼ୀ (ସୁଶୀଳା ଦେବୀ)ଙ୍କୁ କହିଲି । ବଡ଼ ଖୁଡ଼ୀ ଓ କକେଇଙ୍କ ଭାଗରେ ଲକ୍ଷ୍ମୀ ନାରାୟଣ ମୂର୍ତ୍ତି ଆସିଥିଲେ । ବଡ଼ଖୁଡ଼ୀ ଲକ୍ଷ୍ମୀନାରାୟଣଙ୍କୁ ପ୍ରତିଦିନ ପୂଜା କରନ୍ତି । ବଡ଼ଖୁଡ଼ୀ ବହୁତ ବ୍ୟସ୍ତ ହେଲେ କହିଲେ ମୁଁ ଲକ୍ଷ୍ମୀ ନାରାୟଣଙ୍କୁ ଡ଼ାକୁଛି ଗୋପାଳ ମୂର୍ତ୍ତି କିପରି ଶୀଘ୍ର ଫେରିଆସନ୍ତୁ । ପୁଣି କହିଲେ ତୁ ଜଗନ୍ନାଥଙ୍କୁ ପୂଜା କରୁଛୁ ତାଙ୍କୁ ପ୍ରାର୍ଥନା କରି କହ ଗୋପାଳମୂର୍ତ୍ତି ଶୀଘ୍ର ଫେରିଆସନ୍ତୁ ।

ଏହାପରେ ମୁଁ ବ୍ୟକ୍ତିଗତ ଉଦ୍ୟମରେ ଅନେକଥର ତ୍ରିଲୋଚନପୁର ଯାଇ ଏ ବିଷୟରେ ଅନୁସଂଧାନ କରିଛି । ନରସିଂହ ଆଚାର୍ଯ୍ୟ (ପିଇସା) ମାନସିକ ରୋଗଗ୍ରସ୍ତ ଥିବାରୁ ତାଙ୍କ ଘରେ କୌଣସି ଠାକୁର ନଥିଲେ । ତାଙ୍କ ଘରୁ ତାଙ୍କ ସାନଭାଇ ଓ ଭିଣୋଇ ତାଙ୍କ ପାଗଳାମୀର ସୁଯୋଗ ନେଇ ଧନ ସମ୍ପତି ଓ ସମସ୍ତ ଠାକୁର ମୂର୍ତ୍ତି ନେଇଯାଇଥିଲେ । ମୁଁ ଜଣେ ଭଦ୍ରବ୍ୟକ୍ତି (ଟାଉଟର ?)ଙ୍କ ସାହାଯ୍ୟ ନେଇ ସେମାନଙ୍କ ସହିତ ଯୋଗାଯୋଗ କରିଥିଲି । ମୁଁ ଗୋପାଳ ମୂର୍ତ୍ତିଙ୍କୁ କେବେ ଦେଖିନଥିଲି । ତାଙ୍କ ଘରେ ଯଦି ଅନ୍ୟ ଗୋପାଳମୂର୍ତ୍ତି ପୂଜା ପାଉଥିବେ ତାହା ରଥ ବଂଶର କି ନାହିଁ ଜାଣିବା ମୋ ପକ୍ଷରେ ସମ୍ଭବ ନଥିଲା । ଏହା ମଧ୍ୟରେ ସେବତୀ ନାନୀ ମଧ୍ୟ ଦେହତ୍ୟାଗ କରିସାରିଥିଲେ । ଯେଉଁ ଭଦ୍ରବ୍ୟକ୍ତିଙ୍କ ସହାୟତାରେ ମୁଁ ଗୋପାଳ ମୂର୍ତ୍ତିଙ୍କୁ ଉଦ୍ଧାର କରିବାକୁ ଚେଷ୍ଟା ଚଳାଇଥିଲି, ସେ ଥରେ କହିଲେ ତୁମେ ଯଦି ବି ଗୋପାଳମୂର୍ତ୍ତିଙ୍କୁ ଚିହ୍ନଟ କରିପାରିବ ତେବେବି ମୂର୍ତ୍ତି ଓଜନର ସୁନା ଦେଲେବି ଯାହାଘରେ ଥିବ ସେ ତୁମକୁ ଗୋପାଳମୂର୍ତ୍ତି ଫେରାଇବେ ନାହିଁ । ମୁଁ ହତାସ ହୋଇ ଗୋପାଳମୂର୍ତ୍ତିଙ୍କୁ ଫେରାଇ ଆଣିବା ଆଶା ଛାଡ଼ିଦେଲି ।

କିନ୍ତୁ ହରେକୃଷ୍ଣ ସିହ୍ନା ଯାହା ଭବିଷ୍ୟତବାଣୀ କରିଛନ୍ତି ତାହା ବର୍ଷ ବର୍ଷ ପରେ ସତ ହୋଇଛି । ତେଣୁ ସେ କହିଥିବା ''ଗୋପାଳ ମୂର୍ତ୍ତି'' ଫେରିବା କଣ ସତହେବ ।

ସତରେ କଣ ଗୋପାଳମୂର୍ତ୍ତି ଫେରିବେ ?

୧୦୫୬/୩୫୧୧ ଶତାବ୍ଦୀନଗର
ବରମୁଣ୍ଡା, ଭୁବନେଶ୍ୱର-୩
ଫୋନ୍- ୯୪୩୭୦୦୬୫୫୬
୯୯୩୭୦୫୧୫୬୬



# ଆଉ କିଛି ବାକି ଅଛି.....

ଶ୍ରୀମତୀ ଝରଣା ରଥ

୧୯୭୫ ମସିହା ଜୁଲାଇ ମାସରେ ରଥ ପରିବାରକୁ ବୋହୂ ହୋଇ ଆସିଲି କେନ୍ଦୁଝର ଜିଲ୍ଲାରୁ । ମୋ ବାପଘରେ ମୋତେ କହୁଥାନ୍ତି ତୁ ଭାରି ଭାଗ୍ୟବାନ୍ ପୁରୀ ଜିଲ୍ଲାକୁ ଯାଉଛୁ, ଯେତେବେଳେ ଚାହିଁବୁ ଜଗନ୍ନାଥଙ୍କୁ ଦର୍ଶନ କରିପାରିବୁ । ମୁଁ ସେତେବେଳେ କିଛି ବୁଝୁନଥାଏ । ଶାଶୁଘରେ କ'ଣ ମୋତେ ସବୁ କରିବାକୁ ହେବ । ମଙ୍ଗଳବାର ଦିନ ମୋର ବାହାଘର ହେଲା । ସେତେବେଳେ ଗମନାଗମନ ସୁବିଧା ନଥିଲା । ବର ପହଞ୍ଚିବାରେ ଡେରି ହେଲା ଦେଖି କିଛି ଲୋକ ବାପାଙ୍କୁ କହିଲେ ''ଏତେ ଦୂରରେ କିଏ ଝିଅ ଦିଏ ?'' ବୁଧବାର ୨ଟାବେଳେ ମୁଁ ବାପଘରୁ ବିଦାୟ ନେଲି ।

ରାତି ଅଧରେ ଆମେ କଟକରେ କଟକନାନୀଙ୍କ ଘରେ କିଛି ସମୟ ରହିଲୁ । ରାସ୍ତାରେ ଇଏ କହିଥିଲେ ଆମ ନାନୀ ଭାରି ରାଗି । ମୋତେ ଟିକିଏ ଭୟ ଲାଗିଲା । ନନା (ଶଶୁର) ଥାଆନ୍ତି ଆମ ସାଙ୍ଗରେ । କଟକ ନାନୀ ମୋତେ ଘର ଭିତରକୁ ନେଇ ଓଢଣା ଟେକି ଦେଖିଲେ । ଭୟ ଆଉ ଲାଜରେ ମୋର ଅବସ୍ଥା ଖରାପ । ନାନୀ କହିଲେ, ''କେତେ କାନ୍ଦିଛୁ ତୋ ମୁଣ୍ଡର ସିନ୍ଦୂର ଆଲୁବାଲୁ ହୋଇଯାଇଛି ।'' ନାନୀ ଗୋଟେ ତଉଲିଆ ଓଦା କରି ଏତେ ସ୍ନେହରେ ମୋ ମୁହଁ ପୋଛି ଦେଇ କହିଲେ, ''ବୁଢିଆ ଆମେରିକାରୁ ନାନୀ ଦେଇଥିବା ଫେସ୍ ପାଉଡର ଆଣିଲୁ ମାଇଁ ମୁହଁରେ ଲଗେଇ ଦେବି ।'' ଏତିକିରେ ମୋ ଭିତରେ ଯେଉଁ ଭୟ, ଲାଜ ଥିଲା କୁଆଡେ ଉଭେଇ ଗଲା । ନାନୀଙ୍କଠାରେ ମୁଁ ଯେମିତି ମୋ 'ମା'ର ସ୍ନେହ ଓ ସ୍ପର୍ଶ ପାଇଲି । ସେହି ସ୍ପର୍ଶ ଏବେବି ମୁଁ ଅନୁଭବ କରିପାରେ । ସେହିଦିନଠାରୁ ନାନୀଙ୍କୁ ମୋର ନଣନ୍ଦ ବୋଲି ଭାବେ ନାହିଁ । ନାନୀ ମୋର ଦ୍ୱିତୀୟ 'ମା' ।

ଗୁରୁବାର ଦିନ ଭୋରରୁ ଅନ୍ଧାର ଟିକିଏ ଥାଏ ପାଣ୍ଡବ ପାଟଣା ଗାଁ ମୁଣ୍ଡରେ ପହଞ୍ଚିଲୁ । ବସ୍ ଡ୍ରାଇଭର କହିଲା, ''ଏତେ ସରୁ ରାସ୍ତାରେ ଗାଡି ଗାଁ ଭିତରକୁ ଯିବ ନାହିଁ । ଇଏ ମୋତେ ପଚାରିଲେ ତୁମେ କେବେ ଶଗଡରେ ବସିଛ ?'' ବୋଧହୁଏ ଶଗଡରେ ଯିବ ଘରଯାଏଁ । ମୁଁ ଭାବୁଥାଏ କେମିତି ଶଗଡରେ ବସିବି । ଏହି ସମୟରେ ବାବୁ (ସଂଗ୍ରାମ) ଭୁବନେଶ୍ୱରରୁ ଅଟୋଟିଏ ଆଣି ପହଞ୍ଚି ଗଲେ । ବାବୁଙ୍କୁ ଦେଖି ଇଏ ଖୁସି ହୋଇଗଲେ । ମୁଁ

ବସ୍‌ରୁ ଓହ୍ଲାଇ ଅଟୋରେ ବସିବାକୁ ଯାଉଛି ବାବୁ କହିଲେ, ''ଭାଇନା ମୁଁ ଟିକିଏ ଭାଉଜଙ୍କୁ ଦେଖିବି ?'' ଅନ୍ଧାର ଥିଲା ସେ ମୋ ମୁହଁ ଦେଖି ପାରିଲେନି । ଦିଆସିଲିରୁ ଗୋଟେ କାଠି ଜଳାଇ ମୋ ମୁହଁ ଦେଖିଲେ । ମୋତେ ହସ ଲାଗୁଥିଲା । ଅଟୋରେ ଘରେ ପହଞ୍ଚିଲୁ । ମୋତେ ହୁଳହୁଳି ପକାଇ ଘର ଭିତରକୁ ନେଉଥାନ୍ତି । ମୋ ମନ ଭିତରେ ଆସିଲା ବୋହୂ ହେଉଛି ଘରର ଲକ୍ଷ୍ମୀ । ଆଜି ଗୁରୁବାର ସକାଳ ପ୍ରହର । ମୁଁ ମନେ ମନେ ଠାକୁରଙ୍କୁ ସ୍ମରଣ କଲି । ଭଗବାନ ମୁଁ ଯେଉଁ ଘରକୁ ବୋହୂ ହୋଇ ଆସିଛି ସେ ଘରର ସବୁ ମଙ୍ଗଳ ହେଉ । ବନ୍ଧାପନା କାମ ସରିଲା । ମୋତେ ଭାରିନିଦ । ଅଚିହ୍ନା ମୁହଁ ସବୁ ଆଉ ଅଚିହ୍ନା ଭାଷା । ମୁଁ କଥା କହୁନଥାଏ । କଥା କହିବାକୁ ଠିକ୍ ଭାଷା ପାଉନଥାଏ । ମୋର ଦୁଇ ଯାଆଙ୍କୁ ଚିହ୍ନିଗଲି । ସେମାନେ ଏତେ ସୁନ୍ଦର ଯେ ମୁଁ ଭାବିଲି ମୋତେ କାହିଁକି ବୋହୂ କରି ଆଣିଲେ ? ମୋ ଶାଶୁଙ୍କୁ ଦେଖିବାକୁ ଭାରି ଇଚ୍ଛା ହେଉଥାଏ । ଚତୁର୍ଥୀ ଭୋଜି ସମସ୍ତେ ଖାଉଥାନ୍ତି ଘର ଭିତରେ ବହୁତ ଜଣ ସ୍ତ୍ରୀ ଲୋକଙ୍କୁ ଖାଇବାକୁ ଦିଆଗଲା । ଦୁଇ ଯାଆଙ୍କ ସାଙ୍ଗରେ ମୋତେ ବସିବାକୁ କହିଲେ । ସମସ୍ତେ ଖାଉଥାନ୍ତି କିନ୍ତୁ ମୁଁ ଖାଇ ପାରୁନଥାଏ । କେଜାଣି କାହିଁକି ମୋତେ ଭାସିଲା ପରି ଲାଗୁଥାଏ । ଲାଲା ଆସି କହିଲେ, ''ଭାଉଜ ଖାଉନ'' । କେତେ ସ୍ନେହ ଥିଲା ସେତିକି କଥାରେ । ନାନୀ (ଯା') କହିଲେ, ''ଖାଇଦେ ବୋଉ ଚାହିଁଛନ୍ତି । ରାଗିବେ ।'' ଏଇ ସମୟରେ ମୁଁ ବୋଉଙ୍କୁ ଦେଖିଲି । ବଡ ବଡ ଆଖି ତାଙ୍କ ଅତି ସୁନ୍ଦର କିନ୍ତୁ ଗମ୍ଭୀର ମୁହଁ ଦେଖି ସତରେ ଡର ଲାଗିଲା ।

ଜୀବନ ପର୍ବ ଆରମ୍ଭ ହେଲା । ସେତେବେଳକୁ ମୋର ନାମ ପରିବର୍ତ୍ତନ ହୋଇଯାଇଥାଏ 'ପ୍ରତିଭା'ରୁ 'ଝରଣା' । ଝରଣାରେ ମୁଁ ଏତେ ଅଭ୍ୟସ୍ତ ନଥିଲି । ନନା ମୋତେ ଏତେ ଆଦରରେ ଝରଣା ଡାକୁଥିଲେ ଯେ ବହୁତ ଶିଘ୍ର ନାମଟାକୁ ଆପଣାର କରିନେଲି । ମୁଁ କାମ କରି ଜାଣିନଥିଲି । ଝାଡୁ କରିବା, ବାସନ ମାଜିବା, ଲୁଗା ସଫା କରିବା ପୁଣି ରୋଷେଇ କ'ଣ କରିବି ? ମୁଁ ତ ଏ ଘରେ ଫିଟ୍ ବସୁନି । ଦୁଇ ନାନୀ କେତେ ସୁନ୍ଦର କାମ କରୁଛନ୍ତି । ନନା, ବୋଉଙ୍କ ପାଟିରେ ସବୁବେଳେ 'ଅର୍ଚ୍ଚନା' ଥାଏ । ବୋହୂ ହେବ ତ ଅର୍ଚ୍ଚନା ପରି । ମୁଁ ମଝିଆଁ ନାନୀଙ୍କଠାରୁ ଶିଖିବା ପାଇଁ ଚେଷ୍ଟା କରିବା ଆରମ୍ଭ କରିଲି । ମଝିଆଁ ଭାଇନା କହିଲେ ଝରଣାଙ୍କୁ ଧିରେ ଧିରେ କାମ ଦେବ । ବେଶୀ କାମ ଏକାବେଳେ ଦେବନି । ନାନୀ କହିଲେ, ''ସବୁ ଶିଖିଯିବ ।'' ବଡ ଭଉଣୀ ପରି ମୋର ଦୁଇ ନାନୀ ।

ବର୍ଷା ରାତି ନାନୀ କହିଲେ, ''ବାସନ ତକ ମାଜି ଦେଇ ଶୋଇବାକୁ ଯିବୁ ।'' କ'ଣ କରିବି ଏତେ ବାସନ ପୁଣି କଳା ବାସନ । କାନ୍ଦ ଲାଗିଲା । ଏତେ ଜୋର୍‌ରେ କାନ୍ଦିଲି ଯେ ବର୍ଷା, ପବନର ଘୋ' ଘୋ' ଶବ୍ଦରେ ମୋ କାନ୍ଦ ମିଶି ଏକାକାର ହୋଇଗଲା । ଲୁଗା ସଫା କରି ପାରୁନଥାଏ । ସବୁଦିନ ନୂଆ ଶାଢ଼ୀ କାଢି ପିନ୍ଧେ । ଗାଧୁଆ ଘରେ ଓଦା ଲୁଗା ରହି ତଳ ଲୁଗା ସବୁ କଣା ହୋଇଯାଇଥାଏ ଉପରୁ ଦୁଇ ଚାରିଟା ଲୁଗା ଭଲ ବାହାରିଲା ।

ବାପ ଘରକୁ ଯିବାର ସୁଯୋଗ ଆସିଲା । ମୁଁ ମା'କୁ କହିଲି କେହି ଲୋକ ନାହାନ୍ତି କାମ କରିବା ପାଇଁ ମୁଁ କାମ କରି ପାରୁନି । ମା' ବିରକ୍ତ ହୋଇ କହିଲା, ''ତୁମେ ମାନେ ପାଣି ଗିଲାସେ ବି ନିଜେ ଆଣି ପିଅନି । ହଉ ମୁଁ ତୋ ସାଙ୍ଗରେ ଗୋଟେ ପିଲା ପଠାଇବି । କିନ୍ତୁ ତୁ ଧିରେ ଧିରେ କାମ କରି ଶିଖିବୁ ।'' ଶୀତ ଦିନ । ଆମେ ତିନି ଯା' (ସାନଯା) ଆସି ନଥାଏ, ବାସନ ମାଜୁଥାଉ । ଜଣେ ମାଜିଲେ ଆଉ ଜଣେ ଧୋଉଥାନ୍ତି । କଲ୍ୟାଣୀ (ନଣନ୍ଦ)ଙ୍କୁ କଷ୍ଟ ହେଲା ମୋ ଭାଉଜମାନେ ଏତେ ଶୀତରେ ଥଣ୍ଡା ପାଣିରେ ବାସନ ମାଜୁଛନ୍ତି । ସେ ନଡିଆ ବରଡା ଜଳାଇ ଡେକିଚିରେ ପାଣି ଗରମ କରି ଦେଲେ । ସେ ଗରମ ପାଣି ବା କେତେ ? ସେତିକିରେ ବାସନ ମଜା ହୋଇ ପାରିବନି । କଲ୍ୟାଣୀଙ୍କର ଭାଉଜମାନଙ୍କ ପ୍ରତି ଏତେ ଭଲ ପାଇବା ଥିଲା ଏଇଥିରୁ ଜଣାପଡିଲା ।

ମୋ ଦେଢଶୁରମାନେ ଏତେ ଭଲ ଯେ କ'ଣ କହିବି । ରୋଷେଇ ଦାୟିତ୍ୱ ମୋ ଉପରେ ଥାଏ । ଦଶଟା ପୂର୍ବର ରାନ୍ଧିଲେ ବଡ ଭାଇନା ଖାଇ ସ୍କୁଲ ଯିବେ । ଭାଇନା ସବୁଦିନ ଖାଇଲା ବେଳେ ତରକାରୀରେ ପାଣି ଢାଳି ଖାଇକରି ଯା'ନ୍ତି । ମୁଁ କାନ୍ଥ ଆଡୁଆଳରେ ଥାଇ ଦେଖେ କିଛି ବୁଝି ପାରେନି । ଦିନେ ମୁଁ ଭାଇନାଙ୍କୁ ଖାଇବାକୁ ଦେଇ କାନ୍ଥ ଆଡୁଆଳାରେ ଠିଆ ହୋଇଛି ଭାଇନା କହୁଛନ୍ତି, ''ବୋଉ କ'ଣ କରିବା କହିଲୁ ସବୁଦିନ ତ଼ରକାରୀ ଲୁଣିଆ ହେଇ ଯାଉଛି । ଚୂଲୀ ମୁଣ୍ଡରେ ଲୁଣ କଣ୍ଟ୍ରୋଲ ଲେଖିଦେଲେ ହେବ ।'' ବୋଉ ବି କିଛି କହୁନଥିଲେ । ମୁଁ ବୋଉଙ୍କୁ ପଚାରିଲି ବୋଉ ଭାଇନା ଖାଇ ପାରୁନାହାନ୍ତି ନା, ବୋଉ ଶାନ୍ତ ସ୍ୱରରେ ହସି ହସି କହିଲେ, ''ଆଉ ଟିକିଏ ଲୁଣ କମ୍ ପକାଇବୁ ।'' ପଗଡ଼ ଲୁଣ ମୁଁ କେବେ ଦେଖି ନଥିଲି । ଧିରେ ଧିରେ ମୋର ଭୁଲ୍ ସୁଧାରିବା ପାଇଁ ଚେଷ୍ଟା କଲି । ମଝିଆଁ ଭାଇନା କହନ୍ତି, ''ମୁଁ ଦେଢ଼ଶୁର କ'ଣ ମାନିବି ନାହିଁ । ମୋତେ ତୁମେ ଲୁଚିବନି । ମୁଁ ତୁମକୁ ପସନ୍ଦ କରି ଘରକୁ ଆଣିଛି ।'' ଭାଇନାଙ୍କ ପାଖରେ ଆମେ ଭାରି ଫ୍ରି । ଆମ ବଡ଼ ବଗିଚାରେ ଜଣେ ଲୋକ ଜଗୁଆଳି ହୋଇଥାଏ । ସେ ପ୍ରତିଦିନ ଘରକୁ ଆସି ଭାତ ନିଏ । ବାଡ଼ି ପଟରୁ ସେ

ଆସେ । ନାନୀମାନେ ସେ ଲୋକକୁ ଯାଇ ଭାତ ଦିଅନ୍ତି ଗୋଟିଏ ଦିନ ନାନୀମାନେ କାମରେ ବ୍ୟସ୍ତ ଥିଲେ । ମୋତେ କହିଲେ, ''ଯା'ତାକୁ ଭାତ ଦେଇ ଦେବୁ ।'' ମୁଁ ଯାଇ ତାକୁ ଭାତ ଦେଲି । ବୋଉ ବାଡ଼ି ପଟେ ବୁଲୁଥାଆନ୍ତି । ସେ ଲୋକ ବୋଉଙ୍କୁ କହିଲା, ''ଆଏ, ମା' ବଡ଼ ଦୁଇ ବୋହୂ ଏତେ ସୁନ୍ଦର ଦେଖି ଆଣିଲ । ଏ ବୋହୂକୁ କ'ଣ ଏମିତି ଆଣିଲ ? ଡ଼ାକ୍ତର ବାବୁଙ୍କୁ କଣ ଝିଅ ଅଭାବ ଥିଲା ?'' ଏତିକି ଶୁଣି ବୋଉ ରାଗି ପଞ୍ଚମ । କହିଲେ, ''ତୁ ଆଜି ମୋ ବଗିଚାରୁ ବାହାରି ଯା' । ତୁ ମୋ ବୋହୂକୁ କହିବା ପାଇଁ କିଏ ?'' ଏତେ ସ୍ନେହ ଶ୍ରଦ୍ଧା ପାଇ ମୁଁ ଧିରେ ଧିରେ ଆମ ପରିବାରରେ ବାନ୍ଧି ହୋଇ ଯାଉଥାଏ । ମୁଁ ମୁରୁଜ ପକାଇ ପାରୁନଥିଲି । ନାନୀମାନେ ମୁରୁଜ ପକାଇ ନନା (ଶଶୁର)ଙ୍କୁ କହିବେ ''ନନା ଦେଖନ୍ତୁ, ଆଜି ଝରଣା ମୁରୁଜ ପକାଇଛି । ଆଜି ଏଇ ତରକାରୀ ଝରଣା ରାନ୍ଧିଛି । ନନା ଭାରି ଖୁସି ହୁଅନ୍ତି । କିନ୍ତୁ ମୁଁ ଜାଣେ ମୁଁ କ'ଣ କରିଛି । କଲ୍ୟାଣୀ କହନ୍ତି, ''ଆମ ଭାଇନାମାନଙ୍କ ସାଙ୍ଗରେ ଭାଉଜମାନଙ୍କର ରାଜଯୋଟକ ପଡୁକି ନ ପଡୁ ଯା'ମାନଙ୍କ ଭିତରେ ରାଜଯୋଟକ ପଡ଼ିଛି ।''

ଦିନେ ବଡ଼ କକେଇ (ପୁରୀ)ଙ୍କୁ ଦେଖିବାର ସୌଭାଗ୍ୟ ମୋତେ ମିଳିଲା । ବୋଉ ଆମମାନଙ୍କୁ କହିଲେ ବଡ଼ କକେଇ ଆସିଛନ୍ତି ଯାଅ ମୁଣ୍ଡିଆ ମାର । କକେଇଙ୍କ ପାଇଁ ଖାଇବା ପ୍ରସ୍ତୁତ କର । ଲମ୍ବା ଶରୀର । ତୋଫା ଗୋରା ସ୍ନେହ ଭରା ମୁହଁ ଦେଖି ମୁଁ ମୁଗ୍ଧ ହେଇଗଲି । ଭୂମିଷ୍ଠ ପ୍ରଣାମ କଲୁ ଆମେମାନେ । ଖାଇବାକୁ ବାଢ଼ିଲୁ । ପିଢ଼ାରେ ବସି କକେଇ ଖାଉଥାଆନ୍ତି । ହାତ ଥରୁଥିଲା । ବୋଉ ବସିଥାନ୍ତି କକେଇଙ୍କ ପାଖରେ ବିଞ୍ଚଣା ଧରି । ମୁଁ ନାନୀଙ୍କୁ କହିଲି କକେଇଙ୍କୁ ଖାଇବା ଭଲ ଲାଗୁଛି ନା ନାହିଁ କେଜାଣି । କିନ୍ତୁ ଭାରି ଖୁସିରେ ଖାଇ ଉଠିଗଲେ । ତୋଫାନୀ ନାନୀଙ୍କୁ ମୁଁ ବହୁତ ଦିନ ପରେ ଦେଖିଲି । ତାଙ୍କ କଥା ମୁଁ ଶୁଣେ । ନାରୀ ହେଉଛନ୍ତି ସର୍ବଗୁଣ ସମ୍ପର୍ଣ୍ଣା । ଯେଉଁ ଦିନ ନାନୀଙ୍କୁ ପୁରୀରେ ଦେଖିଲି ସତରେ ସର୍ବଗୁଣ ସମ୍ପର୍ଣ୍ଣା । ଭାରି ମିଠା ମିଠା କଥା । ସୁ-ସଜ୍ଜିତ ଘର ତାଙ୍କ ଆନ୍ତରିକତାରେ ମୁଁ ଟାଣି ହୋଇ ଯାଉଥାଏ । ତାଙ୍କ ଗୁଣରୁ ମୋତେ ଟିକିଏ ମିଳନ୍ତା କି ? ଟୁକୁଙ୍କୁ ମଧ୍ୟ ବହୁତ ଦିନ ପରେ ଦେଖିଲି । ଯାଙ୍କଠାରୁ ମାତ୍ର ଦୁଇ ଦିନର ସାନ । ସେ ମଧ୍ୟ ଉଚ୍ଚ ଶିକ୍ଷିତା । ମୁଁ ମୋ ନିଜକୁ ଭାରି ଛୋଟ ମନେ କରେ । ଗର୍ବିତ ବି ହୁଏ କି ଏମାନେ ମୋର ସମସ୍ତେ ନିଜ ଲୋକ । ବଡ଼ ଖୁଡ଼ୀଙ୍କ ପାଖରୁ ବି ମୁଁ ସ୍ନେହ ପାଇଛି । ପୁରୀ ଗଲେ ଭାରି ଆଦରରେ ଆମକୁ ଖାଇବା ପାଇଁ ଦିଅନ୍ତି । ଶାଶୁ ପରି ଲାଗନ୍ତି ନାହିଁ । ସତେ ଯେମିତି ଆମେ ତାଙ୍କର ଝିଅ । ସମ୍ମାନରେ ତାଙ୍କ ପାଖରେ ମୁଣ୍ଡ ନଇଁଯାଏ ।

ମଝିଆଁ କକେଇ (ନିରାକାରପୁର)ଙ୍କୁ ଦେଖି ଆଚମ୍ବିତ ହେଲି । ଏତେ ସୁନ୍ଦର ବ୍ୟକ୍ତିତ୍ୱ । ଦିନେ ଟ୍ରେନରେ ଯିବାର ଥାଏ । ଆମେ ଷ୍ଟେସନ୍‌ରେ ବସିଛୁ । ବାବୁ (ସଂଗ୍ରାମ) ଆସି ପହଞ୍ଚିଲେ । ତାଙ୍କ ହାତରେ ଥାଏ ଗୋଟିଏ ସୁନ୍ଦର ହଳଦିଆ ଗୋଲାପ ଫୁଲ । ଏତେ ବଡ଼ ଆଉ ଏମିତି ରଙ୍ଗରେ ଗୋଲାପ ଫୁଲ ଆଗରୁ କେବେ ଦେଖି ନଥିଲି । ଫୁଲ ଦେଲେ । କହିଲେ, "ଭାଉଜ ନନା ଦେଇଛନ୍ତି ଏହାକୁ ଗ୍ରହଣ କର ।" ମୋ ଆଖି ବଡ଼ ବଡ଼ ହୋଇଗଲା । ଏତେ ସୁନ୍ଦର ଫୁଲ କେମିତି କକେଇ ଗଛରୁ ତୋଳି ପାରିଲେ ? ତା'ମାନେ କକେଇ ଆମମାନଙ୍କୁ ଏତେ ଭଲ ପାଆନ୍ତି । ମୁଁ ଗଦ୍ ଗଦ୍ ହୋଇଗଲି । ବହୁତ ଦିନ ପର୍ଯ୍ୟନ୍ତ ମୁଁ ସେଇ ସୁନ୍ଦର ଫୁଲକୁ କକେଇଙ୍କ ଆଶୀର୍ବାଦ ଭାବି ସାଇତି ରଖିଥିଲି । କକେଇ ଯେତେବେଳେ କଳିଙ୍ଗ ହସ୍‌ପିଟାଲ୍‌ରେ ଥିଲେ ମୁଁ ଯାଇଥିଲି ଦେଖିବାକୁ । ବିରକ୍ତ ହେଉଥାଆନ୍ତି । "ଏଠାର ଖାଦ୍ୟ ଭଲ ଲାଗୁନି ।" ମୁଁ ପଚାରିଲି ଆପଣଙ୍କୁ କ'ଣ ଖାଇବାକୁ ଇଚ୍ଛା ହେଉଛି । କହିଲେ ସନ୍ତୁଳା । ତା'ପରଦିନ ମୁଁ ସନ୍ତୁଳା ନେଇ କକେଇଙ୍କୁ ମୋ ନିଜ ହାତରେ ଖୁଆଇଲି । ଭାରି ତୃପ୍ତି ଅନୁଭବ କଲେ ଓ ମୋତେ ବହୁତ ଆଶୀର୍ବାଦ ଦେଲେ । ତାଙ୍କ ପାଖରେ ନତ ମସ୍ତକ ହୋଇ ମୋ ଆଖିରୁ ଦୁଇ ଟୋପା ଲୁହ ଝରିଗଲା । ଯାହା ହେଉ, ଏତିକି ଟିକିଏ ସେବା କରିବାର ସୁଯୋଗ ମୋତେ ଦେଲେ ।

ସାନ କକେଇ ଭୁବନେଶ୍ୱରରେ । ସାନ କକେଇଙ୍କର ହସ ହସ ମୁହଁ ଯିଏ ଥରେ ଦେଖିଥିବ ସାରା ଜୀବନ ଭୁଲି ପାରିବନି । ଆମକୁ ଦେଖିଲେ ଖୁସି ହୋଇଯାଆନ୍ତି । କକେଇଙ୍କ ଖୁସିରେ ଆମର ପେଟ ପୁରି ଯାଏ । ଖୁଡ଼ି ବହୁତ ସୁନ୍ଦର । ଜ୍ଞାନ ଭରି ରହିଛି ତାଙ୍କ ପଖରେ । ଖୁଡ଼ୀଙ୍କ କଥା ମୁଁ ଖୁବ୍ ମନ ଦେଇ ଶୁଣେ । ବାଦୁ ମୋର ଆଦରର ଦିଅର । ସରଳ ସ୍ୱଭାବ । ସେ ମୋତେ ଭାରି ପ୍ରଶଂସା କରନ୍ତି । କୁହନ୍ତି, ତୁମେ ହେଲ ମୋର ନମ୍ବର ୱାନ୍ ଭାଉଜ । ମୁଁ ତ ତୁମ ପାଇଁ କେବେ କିଛି କରିନି ତୁମେ କ'ଣ ପାଇଁ ମୋତେ ପ୍ରଶଂସା କର ? ମୀନା, ବିଦ୍ୟା ମୋର ଅତି ପ୍ରିୟ ଦୁଇ ସାନଯା । ମୀନା ପାଖରେ ଯେଉଁ ସବୁ ଗୁଣ ଅଛି ଏମିତି ଖୁବ୍ କମ୍ ଲୋକଙ୍କ ପାଖରେ ବୋଧହୁଏ ଥିବ । ଗୋଟିଏ ସମୟରେ ବିଦ୍ୟା ଆମର ଖୁବ୍ ଯତ୍ନ ନେଇଛି । ମୁଁ କେବେ ଭୁଲି ପାରିବିନି । ବିଦ୍ୟାର ସୁନ୍ଦର ମୁହଁ, ବଡ଼ ବଡ଼ ଆଖି, ଗୁଲୁଗୁଲିଆ କଥା ସତରେ ସେ ମୋର ଗେହ୍ଲା ସାନ ଭଉଣୀଟା । ସତରେ ଏତେ ସୁନ୍ଦର ଆମ ପରିବାର, ଏତେ ସୁନ୍ଦର ଆମ ଗାଁ । ଏତିକି ଲେଖିଛି ଏଇ ସମୟରେ ଇଏ ଭିତରକୁ ଆସି

କହିଲେ କ'ଣ ଲେଖାସରିଲା ? ମୁଁ ୟାଙ୍କୁ କହିଲି ବୁଝିଲ କେତେ ଆହୁରି ଲେଖିବାକୁ ବାକି ଅଛି । କେତେ କୁହା ଅକୁହା କଥା ରହିଗଲା । ଇଏ ମୋତେ ଚାହିଁ ମୁରୁକି ମୁରୁକି ହସିଲେ । କହିଲେ,

''ସଖି ଗୋ... ତୁମର
　　　ଦୁଇ ଓଠ ତଳେ
କେତେ ଯେ ଅକୁହା କଥା -
　　　ରହିଥାଉ ସଖି ରହିଥାଉ
ସବୁ କଥା ଯଦି କହିଦିଆଯାଏ
　　　କିସବା ରହିଲା ଆଉ ।।''

।। ମୁଁ ଲାଜେଇ ଗଲି । ତାଙ୍କ ହାତକୁ ବଢ଼ାଇ ଦେଲି ଏହି ଲେଖାଟି ।

୪୦୯, ବନ୍ଦନା ଆପାର୍ଟମେଣ୍ଟ୍
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର-୨





# Reminiscent of my village -Dia

**Arun Prasad Rath**

My heart raced, my eye brows raised when I heard Nana whisper to Bou that his leave was granted and that we will spend summer holidays about two weeks in Dia. I remember asking bou now and then when we will be going to Dia and finally that day comes when I get up so early in the morning and run up and down from the house to railway tracks to give commentary of trains, Nana and Bou do last minute checking of the long list of items packed and when the train was about to arrive, Nana usually gets a last minute's nature call to relieve himself. We all feel worried that all our preparations will go in vain if unable to catch the train. We lived in a colony at Bhubaneswar which was close to railway tracks, usually we wait till train is seen past signal post and approach towards platform: we carry luggage and hurriedly move towards platform to catch the train for Nirakarpur.

Close to Nirakarpur, my heart beats faster, as we need to off load luggage quickly as train stops for a brief period. Jaya our loyal farmer, used to come in his bullock cart to take all of us safely in the by lanes of various village leading to Dia. What a joy to smell the muddy roads littered with cow dungs leading to Dia, we look with joy our own orchard so closely located near the railway station full of big mango and jack fruit trees.

Day starts very relaxed in the village, I could see people brushing their teeth with sticks standing on their verandas, women picking up water from the nearby well, bullock carts passing and people greeting each other. I roam around in the muddy street after getting up, plucking mangoes from the

trees in hand from our own orchard and land up usually on the banks of bada pokhari. I like it because of its size.

I remember one day everybody was worried as I couldn't be seen in nearby places since early morning. I appeared very late in the afternoon and expecting a reprimand from all elders standing outside the house. Bada dhethai walked towards me and looking at my wet clothes soaked with mud asked me what I was holding in my closed palms, I showed her handful of small fish and shrimps caught from bada pokahari when it was being cleaned annually. She lovingly smiled and took me inside the house so that nobody could scold me. I will never forget the love and warmth shown to me by bada dhethai on that day.

I remember strolling everywhere on village roads from one end to other in the afternoon when everybody was resting plucked guava from bada dadei's house, mangoes from orchard and running after cows and goats.

Ratha Yatra is another memorable event where we mingle with everybody and that it gives me immense joy and fun. Bahuda jatara is so prolific with sounds of drums and bells that I completely get lost in my thoughts. I love my village and all the near and dear ones, souls feel good.

As I heard stories from the elders of our relations the contribution of Rath family for the development of our village "Dia" I felt a sort of pleasure. I was proud to be one of Rath family.

**Lumibini Vihar**
**Chandrasekharpur, Bhubaneswar**

# In presence of the absence : Reminiscing the memories

Jajneswar Chhotaray

Words fail me. I read that ancient Egyptians had fifty words for sand & the Eskimos had a hundred words for snow. I wish I had a hundreds of words for your benevolence but all that comes to my mind is the way you blessed when I touched your feet or how you attentively you listened for whatever ordinary I spoke to you and there are no words for that.

An emptiness has been ruling within me for my beloved teacher Vishwanath Roth, an exemplary phenomena is no more in this corporeal world. An embodiment of unmatched conventional wisdom. Suave, gentle & a personality always class apart. This now is fate of my intriguing queries, most of those are still unanswered. Ideas are yet to be exchanged & thoughts are to be celebrated.

Ars longa, Vita brevis

This Greek adage literally meaning - 'art is long, life is short' was so dear to him, he made this maxim wall-written at the entrance of the English Language Teaching Centre, his brainchild. Lost his faith in contemporary education system, he emphasized on continuous learning from every possible means within our allotted lifespan. Often, he cited vedic hymn 'Let noble thoughts come from everywhere' (a no bhadrah kratavo ksyantu vishvatoh). Perhaps, this guiding principle let him remain a student till his last breath.

English as muse & Grammar, the beating pulse

'Ignorant people think it is the noise which fighting cats make

that is so aggravating, but it ain't so; it is the sickening grammar they use' Mark Twain

Few people choose to fall in love with the languages. Even fewer do it sincerely making sure it's gracefulness remains intact. For Vishwanath Roth Sir, it was always - 'Bharo na badhati Rajan, Taba badhati badhate'. A born perfectionist, whose major part of life spent in study of English literature, grammar & semantics. He accepted fact that English is an exotic language & wished it should be dealt with undiluted approach to keeps it charm original. He used to be displeased for so called educated people never accepting the crudeness & not showing any sign of learning to avoid unwanted mistakes they make while write and speak. I often seen him, encircling mistakes even on letters written to him & that's why continuously improving his understanding of a language.

On Osho & Socrates

Perhaps these two personalities remained close to your heart for audacity of telling the truth & nourishing an ever intrigued mind what can question everything. You always hated to come with a ready-made answer for each query put by your pupil. Rather they are taught to find answer themselves probing in a Socratic way.

Among all your favorite discourses of Osho, 'Geeta Darshan', the serious magnificent work by the master always overwhelmed you. In his last days, I heard Sir wishing for a little more time to at least complete it's all volumes.

Because, Laughter is the best medicine

With great sense of humour, ready-wit & his trade mark gestures when ever he laughed, contagious it was & always let numerous kept giggling. The timing of cracking joke in a

conversation or bring an illustration while a discussing on a topic was his exclusive art. He trained us to laugh at our own mistakes.

Once on a telephonic conversation with him, I found him sneezing in viral fever, concerned I was, requested him to have medicine early rather than suffering for couple of days & be compelled to have later. To which, he replied, "Don't you know when a fever is of viral, it takes seven days to be cured with medicine & a week without any medication.

Perhaps , he was the one who could not afford to miss a humour in a any incident or subject.

Real-life anecdotes

Late Ananda Roth, educationist & revered father of our teacher, once in an afternoon was getting ready for visiting festive of "Jhulana" (Dedicated to lord Krishna & Sri Radha) with his better half. An unexpected rain approached then to spoil their joy of paying their tribute to the deities duo. But, the senior Roth nevertheless holding hand of his lady, guided her to backyard of house & indicated to swinging trees & plants in rainy winds, adding, "look, it's the real 'Jhulana' (Swinging). With this real-life anecdote shared by Vishwanath Sir reminded me of an enchanting interpretation of 'nature' & helped to comprehend it in a beautiful way. There were hundreds of such anecdotes picked from real life, those are shared to us by Sir.

Books are friends & he had lot of them. A good friend of Sir, who borrowed a book from him, delayed returning it. Meanwhile, Sir started getting dreams of that book, what he missed dearly. His living room was surrounded by piles of books. Works of John Paul Sartre, Dostoevsky, Nabokov, William Shakespeare were there.

Starting from Indian classics like Anandamath, Katha Amrit of

Ramakrishna, Gitanjali to Being & Nothingness, War & Peace, Lolita, Sidney Sheldon series all were there. Specialized grammar books by noted European & American authors were in numbers.

Let's not miss, Sir's love for Sanskrit, he used to get overwhelmed & loved to read the 'Gita' in original Sanskrit version. Such a sensitive person, I remember him saying, how he used to prefer sit in a corner of house to hid himself for watching childhood of lord Rama in the Ramayana while playing 'thumak chalat Ramachandra, bajat paijaniya' and failing to control his tears. For him it was truly an emotional affair that protector of universe presenting himself as toddler.

He was also a connoisseur of creative movies. Loved works of Ritwik Ghatak ( Ajantrik), Satyjit Ray ( Apu's Triology), Raj Kapoor, Shyam Benegal. Remember him getting a reminder call from his physician brother Dr. Rabi Narayan Roth & eagerly tuning to TV channel to watch 'Navrang' a seventies movie on freedom saga.

Dear Sir, I wish to thank you again for teaching me what to think and above all how to think. Love.

**New Delhi**



# ବଂଶ ଲତିକା



ଶମ୍ଭୁରଥ -
(ନୟାଗଡ଼ ପାଖ ଶାସନ ଗ୍ରାମବାସୀ, ଅଳ୍ପ ବୟସରେ ମୃତ, ତାଙ୍କ ସ୍ତ୍ରୀ (ଦାଶ ବଂଶର ଝିଅ) ସ୍ୱାମୀଙ୍କ ମୃତ୍ୟୁପରେ ସମସ୍ତ ସମ୍ପତ୍ତି ବିକ୍ରି କରି ଡ଼ିଆରେ ଜମି ଓ ଘର କିଣି ରହିଲେ)
ଶ୍ୟାମ ସୁନ୍ଦର ରଥ
(ଦାଶଙ୍କ ପରିବାରରୁ ପୁଅ ହୋଇ ଆସିଲେ । ଶମ୍ଭୁରଥଙ୍କ ସ୍ତ୍ରୀଙ୍କ ଭାଇର ପୁତ୍ର)
ସଦାଶିବ ରଥ
(ଗୋଡ଼ା ରାୟମୂଳକୁ ପୁଅ ହୋଇଗଲେ)
ବନମାଳି ରଥ
ଲିଙ୍ଗରାଜ ଦାଶ (ଦାଶଙ୍କ ଘରକୁ ପୁଅ ହୋଇଗଲେ)
ଆନନ୍ଦ ରଥ
ଦୀନବନ୍ଧୁ ରଥ
କୃପାସିନ୍ଧୁ ରଥ
ବାସୁଦେବ ରଥ
ସ୍ୱର୍ଣ୍ଣଲତା
ବିଶ୍ୱନାଥ
ସୁଭାଷ ଚନ୍ଦ୍ର
ରବିନାରାୟଣ
କଲ୍ୟାଣୀ
ଇଳାଚେନ୍ଦୁ
ସରୋଜିନୀ
ଚାନ୍ଦୁ
ସଂଗ୍ରାମ
ଝୁନୁ
ବିକ୍ରମ
ଦେବପ୍ରସାଦ
ବିଷ୍ଣୁପ୍ରସାଦ
ଅରୁଣପ୍ରସାଦ
ସଂଜୟ ପ୍ରସାଦ
ଆଶାଲତା
ସ୍ନେହଲତା
ସତ୍ୟନାରାୟଣ



# ଆମ ଗାଁ

ସ୍ନେହଲତା ତ୍ରିପାଠୀ

ଗାଁ କଥା ମନେପଡ଼ିଲେ ପିଲାଦିନର ଅଭୁଲା ସ୍ମୃତି ମନରେ ଉଙ୍କିମାରେ । ଆମେ ପୁରୀରେ ରହୁଥିଲୁ । କିନ୍ତୁ ଆମ ଗାଁ ସହିତ ଆମର ନବିଡ଼ ସମ୍ପର୍କ ଥିଲା । ଆମ ଗାଁ ଡ଼ିଆ ନିରାକାରପୁର ଷ୍ଟେସନଠାରୁ ପ୍ରାୟ ୨କି.ମି. ଦୂର । ଗମନାଗମନର ସୁବିଧା ଯୋଗୁ ଗାଁର ଆମ୍ବ, ପନିପରିବା ଧାନଚାଉଳ ଏପରିକି ଗାଁ ପୋଖରୀର ମାଛ ଧରା ହେଲେ ମଧ୍ୟ ଆମେ ସତେଜ ଅବସ୍ଥାରେ ସେ ମାଛ ପାଇପାରୁଥିଲୁ ।

ମୋ ନନା ଡ଼ାକ୍ତର ଦୀନବନ୍ଧୁ ରଥ ପୁରୀରେ ପ୍ରସିଦ୍ଧ ହୋମିଓପାଥିକ ଡ଼ାକ୍ତର ଥିଲେ । ନନା ପ୍ରାୟ ଗାଁକୁ ଯାଉଥିଲେ । କିନ୍ତୁ ବୋଉ ଓ ଆମେ ଭାଇଭଉଣୀ, ଗାଁର ପର୍ବପର୍ବାଣୀ, ଅଶୋକାଷ୍ଟମୀ ଯାତ୍ରା, ବିବାହ, ବ୍ରତ ଆଦି ସମୟରେ ଯାଉ । ଗାଁକୁ ଯିବା ସମୟରେ ମନର ଆବେଗ, ଆନନ୍ଦ ଓ ଟ୍ରେନ୍‌ର ଶବ୍ଦ ମନକୁ ଅଥୟ କରିଦିଏ । ଗାଁରେ ସରଳ ନିରାଡ଼ମ୍ବର ସ୍ନିଗ୍ଧପରିବେଶ, ପୋଖରୀ, ଆମ୍ବତୋଟା, ବଗିଚା ମନର ଆନନ୍ଦକୁ ଦ୍ୱିଗୁଣିତ କରିଦିଏ । ଗାଁରେ ଆମ ଜେଜେମାଁ, ଦଦେଇ, ଦେଠେଇ, କକେଇ ଖୁଡ଼ୀ ଓ ଭାଇଭଉଣୀଙ୍କ ଗହଣରେ ଦିନକେତୋଟି କଟିଯାଏ । ପ୍ରାକୃତିକ ପରିବେଶ ପରିପୂର୍ଣ୍ଣ ଗାଁର ଦୃଶ୍ୟ ମନରୁ ଲିଭେନି ।

ଦଦେଇ ୰ ଆନନ୍ଦ ଚନ୍ଦ୍ର ରଥ ନିରାକାର ହାଇସ୍କୁଲର ପ୍ରଧାନ ଶିକ୍ଷକଭାବେ ଜୀବନର ଅର୍ଦ୍ଧେକ ସମୟ ଅତିବାହିତ କରିଥିଲେ । ବଡ଼ କକେଇ କୃପାସିନ୍ଧୁ ରଥ ସରକାରୀ ଅବକାରୀ ବିଭାଗରେ କର୍ମରତ ଥିଲେ ଓ ସାନ କକେଇ ବାସୁଦେବ ରଥ ରେଳ ବିଭାଗରେ କର୍ମରତ ଥିଲେ । ପ୍ରାକ୍ ସ୍ୱାଧୀନତା ସମୟରେ ପ୍ରାୟ ଇଂରେଜ ଶିକ୍ଷାର ପ୍ରସାର ନଥିଲା । ଏପରିକି ପ୍ରାଇମେରୀ ଶିକ୍ଷା ପାଇଁ ମଧ୍ୟ ବହୁଦୂରକୁ ଯାଇ ସେଠି ବୋଡ଼ିଂ ସ୍କୁଲରେ ରହିବାକୁ ପଡୁଥିଲା । ଇଂରେଜି ଶିକ୍ଷା ପ୍ରତି ଲୋକଙ୍କ ମନରେ ବିଦ୍ୱେଷଭାବ ଥିଲା । କିନ୍ତୁ ଜେଜେବାପା ବନମାଳୀ ରଥଙ୍କ ଶିକ୍ଷାପ୍ରତି ଆଗ୍ରହ ଦୂରଦୃଷ୍ଟି ଥିବାରୁ ସେ ସମୟର ଅଶିକ୍ଷା ଯୁଗରେ ମଧ୍ୟ ଡ଼ିଆ ଗ୍ରାମରେ ଆଲୋକ ପ୍ରଜ୍ୱଳନ କରିବାରେ ସମର୍ଥ ହୋଇଥିଲେ ।

ମୋ ଦଦେଇ ଶ୍ରୀଯୁକ୍ତ ଆନନ୍ଦ ଚନ୍ଦ୍ର ରଥ ଓ ନନା ଶ୍ରୀଯୁକ୍ତ ଦୀନବନ୍ଧୁ ରଥ ସ୍କୁଲ କଲେଜରେ ପଢ଼ିବା ସମୟରେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ବିଦ୍ୟାଳୟ ପରିତ୍ୟାଗ କରିଥିଲେ କିନ୍ତୁ ପରବର୍ତ୍ତୀ ସମୟରେ ସେ ଶିକ୍ଷା ସମାପ୍ତ କରିଥିଲେ । ସ୍ୱାଧୀନତା ସଂଗ୍ରାମୀଙ୍କର ମୂଳମନ୍ତ୍ରରେ ଦୀକ୍ଷିତ ହୋଇ ସେ ଜୀବନର ଶେଷପର୍ଯ୍ୟନ୍ତ ହାତବୁଣା ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ ।

ଦଦେଇ ଆନନ୍ଦ ରଥଙ୍କର ଜନ୍ମଭୂମି ଗ୍ରାମ ଓ ନିକଟସ୍ଥ ଅଞ୍ଚଳର ଉନ୍ନତି ପାଇଁ ଅବଦାନ ଉଲ୍ଲେଖ୍ୟଯୋଗ୍ୟ । ଗାଁର ଶିକ୍ଷା, ସାମାଜିକ ସଂସ୍କାର ଓ ଅନ୍ୟାନ୍ୟ ଉନ୍ନତି ମୂଳକ

କାର୍ଯ୍ୟ ପାଇଁ ବହୁ ଚେଷ୍ଟା କରିଥିଲେ । ନିରାକାରପୁର ହାଇସ୍କୁଲ ଓ କଲେଜ ତାଙ୍କର ଅବଦାନ; ନିରାକାରପୁର ବିଜ୍ଞାନ କଲେଜ ପ୍ରଥମ ସ୍ୱୀକୃତିପ୍ରାପ୍ତ ମହାବିଦ୍ୟାଳୟ ରୂପେ ମାନ୍ୟତା ପାଇଥିଲା । ଗ୍ରାମର ଉନ୍ନତି, ତାଙ୍କର ମୂଳଲକ୍ଷ୍ୟ ଥିଲା । ମୋ ନନା ଦୀନବନ୍ଧୁ ରଥ ମଧ୍ୟ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଗାଁର ଉନ୍ନତିମୂଳକ କାର୍ଯ୍ୟରେ ଜଡ଼ିତ ଥିଲେ ।

ଦଦେଇଙ୍କର ଶିକ୍ଷାଗତ ଯୋଗ୍ୟତା (BA DEd) ଥିଲା । ସେ ସମୟରେ ସେ ଇଚ୍ଛା କରିଥିଲେ, ଯେକୌଣସି ସରକାରୀ ଉଚ୍ଚ ପଦବୀରେ ନିଯୁକ୍ତ ହୋଇ ପାରିଥାନ୍ତେ । କିନ୍ତୁ ସେ ସେତେବେଳେ ଇଂରେଜ ସରକାରଙ୍କର ଗୋଲାମୀ ସ୍ୱୀକାର କରିବାକୁ ଇଚ୍ଛା କରିନଥିଲେ । ନନା ଦୀନବନ୍ଧୁ ରଥ ମଧ୍ୟ କୌଣସି ସରକାରୀ ଚାକିରୀ କରିବାକୁ ପସନ୍ଦ କରିନଥିଲେ । ସେଥିପାଇଁ ସେ ସ୍ୱାଧୀନ ଭାବେ ରୋଗୀଙ୍କ ସେବା କରିବାକୁ ଇଚ୍ଛା କରିଥିଲେ ।

ସାନ କକେଇ ବାସୁଦେବ ରଥ ପ୍ରାୟ ପୁରୀରେ ରହୁଥିଲେ । ତେଣୁ ତାଙ୍କ ସହ ବହୁ ନିବିଡ଼ତା ଥିଲା । ତାଙ୍କ କର୍ମଜୀବନ ସହ ସେ ଜଣେ ବିଶିଷ୍ଟ କଳାକାରଭାବେ ପ୍ରତିଷ୍ଠା ଲାଭ କରିଥିଲେ । ତାଙ୍କର ଅଭିନିତ ନାଟକ ଓ ତାଙ୍କର ସଂଳାପ ଆଜିଯାଏଁ ମନରେ ଗଭୀର ରେଖାପାତ କରିଛି । ସେ ପ୍ରାୟ ଚରିତ୍ର ଅଭିନେତା ଭାବେ ଅଭିନୟ କରିଥାନ୍ତି । ତାଙ୍କ ଅଭିନିତ ନାଟକ ଦେଖି ଆମେ ପିଲାଦିନେ ଏତେ ଭାବବିହ୍ୱଳ ହୋଇ ଯାଉ ଯେ ସେତେବେଳେ ନ କାନ୍ଦି ରହିପାରୁନଥିଲୁ । ମୋତେ ବହୁଥର ତାଙ୍କ ଡ୍ରାମାରେ ମିଶିବାର ସୁଯୋଗ ଦେଇଥିଲେ । ମୁଁ ଏବେ ଏତେ ଡ୍ରାମା ସିନେମା ଦେଖି ମଧ୍ୟ ମୋ କକେଇଙ୍କର ନିଚ୍ଛକ ଅଭିନୟକୁ ଭୁଲିପାରୁନି । ତାଙ୍କ ପିଲାଙ୍କ ସହିତ ବହୁତ ନିବିଡ଼ତା ଥିଲା, କାରଣ ସେ ଆମ ପାଖରେ ଥିଲେ । ଦଦେଇଙ୍କ ପୁଅ ଭାଇମାନେ ମଧ୍ୟ ପ୍ରାୟ ପୁରୀକୁ ଆସି ଆମ ସାଙ୍ଗରେ ସମୟ କଟାଉଥିଲେ । ପ୍ରାୟ ଗ୍ରୀଷ୍ମ ଅବକାଶରେ ଆମେ ସେମାନଙ୍କ ସହଚର୍ଯ୍ୟ ପାଇଥିଲୁ ବହୁତ ଖୁସିରେ ଖେଳି ବୁଲି ସମୟ ଅତିବାହିତ କରୁଥିଲୁ । ଆମେ ପ୍ରାୟ ଅଲଗା ରହିଲେ ମଧ୍ୟ ଏକାନ୍ନବର୍ତ୍ତୀ ପରିବାର ଭଳି ଅନୁଭବ କରୁଥିଲୁ ।

ଏବେ ନନାବୋଉ, ଦଦେଇ ଦେଠେଇ, ବଡ଼ କକେଇ, ଖୁଡ଼ୀ ସାନକକେଇ ସଂସାରରେ ନାହାନ୍ତି । କେବଳ ସାନଖୁଡ଼ୀ ଅଛନ୍ତି । ସାନଖୁଡ଼ୀଙ୍କଠାରୁ ବହୁତ ସ୍ନେହଶ୍ରଦ୍ଧା ପାଇଛୁ, ଭଗବାନ ତାଙ୍କୁ ଦୀର୍ଘଜୀବି କରନ୍ତୁ । ତାଙ୍କୁ ଦେଖିଲେ ବହୁତ ଭଲଲାଗେ । ବର୍ତ୍ତମାନ ଆମ ଗୁରୁଜନମାନେ ଆମ ପାଖରେ ନଥିଲେ ମଧ୍ୟ ତାଙ୍କର ଆଶୀଷ ରଥପରିବାରର ପିଲାଙ୍କ ଉପରେ ଅଛି । ଭଗବାନଙ୍କ ଦୟାରୁ ରଥପରିବାର ସମସ୍ତେ ପ୍ରାୟ ସୁପ୍ରତିଷ୍ଠିତ । ରଥପରିବାରରେ ବଡ଼ପୁଅ, ଆମ ବଡ଼ ଭାଇନା, ବିଶ୍ୱନାଥ ରଥ ମଧ୍ୟ ଦଦେଇଙ୍କ ଦାଦାଙ୍କ ଅନୁସରଣ କରି, ଦୂରକୁ ନ ଯାଇ ନିରାକାରପୁରରେ ଶିକ୍ଷକତା କଲେ । ତଦ୍ୱାରା ସେ ଗ୍ରାମର ଉନ୍ନତି କରିପାରିଛନ୍ତି । ତାଙ୍କ ଯୋଗୁ ଗାଁ ସହିତ ଆମ ଭାଇଭଉଣୀଙ୍କର ସମ୍ପର୍କ ରହିପାରୁଛି ।

୧୦୪୧ ପ୍ରଶାନ୍ତି ବିହାର, ବରମୁଣ୍ଡା, ଭୁବନେଶ୍ୱର

ଫୋନ୍-୯୭୭୭୮୮୪୦୭୩



# କିଛି ଅନୁଭୂତି

ମୀନା ରଥ

ମୁଁ ସ୍ୱର୍ଗତଃ ବାସୁଦେବ ରଥଙ୍କର ବଡ଼ ବୋହୂ । ୧୯୮୩ ଏପ୍ରିଲ୍ ମାସ ୬ତାରିଖରୁ ମୁଁ ଏହି ପରିଚୟ ପାଇଛି । ମୋର ବାହାଘର ସ୍ୱଳ୍ପ ଦିନର ବ୍ୟବଧାନରେ ଠିକ୍ ହୋଇଥିଲା । ସେହି ସ୍ୱଳ୍ପଦିନ ମଧ୍ୟରେ ମୋର ଶ୍ୱଶୁର ଘର ସମ୍ପର୍କରେ ଯାହା ଶୁଣିଥିଲି ତାହାଠାରୁ ମୁଁ ଅଧିକ ପାଇଛି । ମୁଁ ଯେତେବେଳେ ବାପଘର ଛାଡ଼ି ଭୁବନେଶ୍ୱର ଆସିଥିଲି ମୋର ବୁକୁଫଟା କାନ୍ଦ ଦେଖି ମୋର ଶ୍ୱଶୁର କାନ୍ଦି ପକାଇଥିଲେ । ସେହିଦିନ ମୁଁ ଭାବିଥିଲି ମୋର ଶ୍ୱଶୁର କେତେ ଉଦାର ପ୍ରକୃତିର । ଶ୍ୱଶୁର ଘରେ ପାଦ ଦେଇ ମୁଁ ମୋର ବୋହୂ ଜୀବନ ଆରମ୍ଭ କରିଥିଲି । ମୋର ସଂକୋଚତା ଦେଖି ପାଞ୍ଚ ଛଅଦିନ ପରେ ମୋର ଶାଶୁ ମୋତେ କହିଥିଲେ ମୋର ଝିଅ ନାହିଁ, ତୋର ବୋଉ ନାହିଁ । ତେଣୁ ମୁଁ ତୋର ବୋଉ ଓ ତୁ ମୋର ଝିଅ । ଏହି କଥା ପଦକ ମୋତେ ନ କାନ୍ଦିବାକୁ ଧୈର୍ଯ୍ୟ ଦେଇଥିଲା । ମୁଣ୍ଡରେ ରହୁନଥିବା ଓଢ଼ଣା ଟାଣୁଥିବାର ଦେଖି ମୋର ଶ୍ୱଶୁର କହିଥିଲେ ମୁଣ୍ଡରେ ଓଢ଼ଣା ଦେବା କିଛି ଦରକାର ନାହିଁ । ସେବେଠାରୁ ମୁଁ ସମସ୍ତଙ୍କ ସ୍ନେହ, ଶ୍ରଦ୍ଧା ପାଇଁ ପରିବାର ମଧ୍ୟରେ ଚଳି ଆସୁଛି ।

ମୋର ଦିଅର ମାନେ ମୋତେ ବଡ଼ ଭଉଣୀ ପରି ସମ୍ମାନ ଦେଉଥିଲେ । ମୁଁ ମଧ୍ୟ ପ୍ରତିଦାନରେ ବଡ଼ ଭଉଣୀର ସ୍ନେହ ଦେବାକୁ ସାଧ୍ୟ ମୋତେ ଚେଷ୍ଟା କରିଛି । ମୁନା, ଟିଟା ଛୁଟୀରେ ଘରକୁ ଆସିଲେ ଚାରି ଭାଇଙ୍କ ମେଳରେ ଖୁବ୍ ଖୁସିରେ ସମୟ କଟିଛି । ପରେ ବିଦ୍ୟା, ଜ୍ୟୋତି, ଶିଖା ମୋର ପରି ଏହି ପରିବାରକୁ ଆସିଥିଲେ । ଯେତେବେଳେ ସୁଯୋଗ ଆସେ ସମସ୍ତେ ଏକତ୍ରିତ ହୋଇ ହୋ ହାଲ୍ଲାରେ ସମୟ କଟିଯାଏ ।

ଆଉ ମୋର ତିନିଜଣ ଦଦେଇ ଶ୍ୱଶୁର ଓ ଦେଠେଇ ଶାଶୁ ଥିଲେ । ବର୍ତ୍ତମାନ କୌଣସି ଦଦେଇ ଶ୍ୱଶୁର ଦେଠେଇ ଶାଶୁ ଜିବୀତ ନାହାନ୍ତି । କିନ୍ତୁ ନନା (ଶ୍ୱଶୁର) ଙ୍କ ଠାରୁ ଦଦେଇ ଦେଠେଇଙ୍କ କଥା ବହୁତ ଶୁଣିଛି । ବଡ଼ ଦଦେଇ, ଦେଠେଇ, ସାନ ଦଦେଇ, ଦେଠେଇଙ୍କୁ ଦେଖିବାର ସୌଭାଗ୍ୟ ମଧ୍ୟ ପାଇଛି । ଥରେ ବଡ଼ ଦଦେଇ, ଦ୍ୱାରୀ ଭାଇନା ଭୁବନେଶ୍ୱର ଆମଘରକୁ ଆସିଥିଲେ । ବଡ଼ ଦଦେଇଙ୍କ ସ୍ନେହ ବୋଳା କଥା ଏବେ ବି ମନେପଡୁଛି । ସାନ ଦଦେଇ, ଦେଠେଇଙ୍କ ନିରାକାରପୁର ସ୍ଥିତ ଘରକୁ ନନା ବୋଉଙ୍କ ସଙ୍ଗେ ଯାଇଛି । ଦଦେଇ, ଦେଠେଇଙ୍କର ଅମାପ ସ୍ନେହ ସତରେ ଅବିସ୍ମରଣୀୟ । ମଝିଆ ଦେଠେଇଙ୍କୁ ଦେଖିଛି (ଅସୁସ୍ଥ ଅବସ୍ଥାରେ) । ସେହି ଅବସ୍ଥାରେ ତାଙ୍କର ସ୍ନେହବୋଳା କଥା ଭୁଲି ନାହିଁ ।

କଟକ ନାନୀଙ୍କୁ ଯେବେ ପ୍ରଥମେ ଦେଖିଥିଲି ମୋତେ ଟିକିଏ ଡ଼ର ଲାଗିଥିଲା । ତାଙ୍କଠାରୁ ମୋର ବହୁ ବୟସର ବ୍ୟବଧାନ । କିନ୍ତୁ କଥା ହେଲାପରେ ଜାଣିପାରିଥିଲି କେତେ ସ୍ନେହୀ ପ୍ରକୃତିର ସେ । ଆଉ କଲ୍ୟାଣି ନାନୀଙ୍କ ସାଙ୍ଗରେ ଟିକେ ଅଧିକ ମିଶିବାର ସୁଯୋଗ ପାଇଛି । ସେ ଡ଼ାକ୍ତର ଭାଇନାଙ୍କ ପାଖରେ ଥିଲାବେଳେ ଆମେ ସାଙ୍ଗ ହୋଇ ଚଳିଛୁ । ଆଉ ମୋର ମଝିଆ ଦଦେଇ ଶ୍ୱଶୁରଙ୍କ ଦୁଇ ଝିଅ ବୁଢ଼ି ନାନୀଙ୍କ, ଟୁକୁ ନାନୀ ପ୍ରତି ମୋର ଅହେତୁକ ଦୁର୍ବଳତା ଥିଲା । ବୋଧହୁଏ ସେମାନେ ଦୁଇଜଣ ଶିକ୍ଷା ବିଭାଗରେ ଥିଲେ ବୋଲି । ମାମି ନାନୀ, ଚାନୁ ନାନୀ, ଝୁନୁ ଏମାନଙ୍କ ସଙ୍ଗେ ବିଶେଷ ମିଶିବାର ସୁଯୋଗ ପାଇନି ।

ବଡ଼ ଭାଇନା ଏବଂ ନାନୀ, ଖୋର୍ଦ୍ଧା ଭାଇନା ଏବଂ ନାନୀ, ଡ଼ାକ୍ତର ଭାଇନା ଏବଂ ନାନୀ, ପୁରୀ ଭାଇନା ଏବଂ ନାନୀ, ନିରାକାରପୁର ଭାଇନା ଏବଂ ନାନୀ ମାନଙ୍କ ସାଙ୍ଗରେ ବିଭିନ୍ନ ବାହାଘର, ବ୍ରତଘରେ ତଥା ଗାଁରେ ପ୍ରସିଦ୍ଧ ଅଶୋକାଷ୍ଟମୀ ପର୍ବରେ ମିଶିବାର ସୁଯୋଗ ପାଇଛି । ଡ଼ାକ୍ତର ଭାଇନା ଓ ବେବୀ ନାନୀ ଆମ ଘର ପାଖରେ ଦୀର୍ଘଦିନ ଧରି ରହିଥିବାରୁ ତାଙ୍କମାନଙ୍କର ଅଧିକ ନିକଟତର ହୋଇପାରିଛି । ଅନେକ ଦୁଃଖ, ସୁଖରେ ଆମେ ଭାଗୀଦାର ହୋଇଛୁ ।

ଆଉ ମୁଁ ମୋର ଝିଅ, ପୁତୁରା, ଝିଆରୀ ମାନଙ୍କର ବଡ଼ ସାଙ୍ଗ । ସେମାନଙ୍କ ସଙ୍ଗେ ମୋର ବହୁତ ଦୁଃଖ ସୁଖ ମୋର । ଶେଷରେ ମୁଁ ମୋର ନାତି (ତଥାସ୍ତୁ)ର ବେଷ୍ଟ ଫ୍ରେଣ୍ଡ୍ ।

ମୋର ଶାଶୁ (ଶ୍ରୀମତୀ କନକଲତା ରଥ) ଜଣେ ବିଜ୍ଞ ନାରୀ । କହିବା ବାହୁଲ୍ୟ ହେବନାହିଁ ମୁଁ ରଥ ପରିବାରକୁ ବୋହୂ ହୋଇ ଆସିବା ଦିନଠାରୁ ଏପର୍ଯ୍ୟନ୍ତ ଶାଶୁଙ୍କ ସଙ୍ଗେ ସାଧାରଣ ଜ୍ଞାନ ଆଲୋଚନା ବେଳେ ଥକି ପଡ଼େ । ଦେଶ, ବିଦେଶ, ଇତିହାସ, ଭୂଗୋଳ ସାଂପ୍ରତିକ ଘଟଣାବଳୀ ସମ୍ପର୍କରେ ଆଲୋଚନା ବେଳେ ଆମେ ଅଧିକ ପାଠପଢ଼ା ବୋହୂମାନେ ତାଙ୍କ ଆଗରେ ହାରମାନୁ । ଭୂଗୋଳ ଓ ପୃଥିବୀ ମାନଚିତ୍ର ସମ୍ପର୍କରେ ତାଙ୍କର ଜ୍ଞାନ ବାସ୍ତବିକ୍ ପ୍ରଶଂସନୀୟ । ତାଙ୍କର ହସ୍ତାକ୍ଷର ଖୁବ୍ ସୁନ୍ଦର । ସେ ଜଣେ ବିଦଗ୍ଧ ପାଠିକା । ମୋଟାମୋଟା ଓଡ଼ିଆ ଓ ବଙ୍ଗଳା ଉପନ୍ୟାସ ପତ୍ରିକା ସାରିଦେବାରେ ଅତି ଧୁରନ୍ଧର । ସକାଳୁ ଖବର କାଗଜ ପଢ଼ିବା ତାଙ୍କର ସଉକ । ମୋର ସାଙ୍ଗସାଥୀ, ବନ୍ଧୁବାନ୍ଧବଙ୍କ ପାଖରେ ମୁଁ ମୋର ଶାଶୁଙ୍କ କଥକହି ଗର୍ବବୋଧ କରେ ।

ଆରମ୍ଭରୁ କହିଛି ସବୁନୁହେଁ କିଛି ସ୍ମୃତି କିଛି ଅନୁଭୂତି ମୋର ବୃହତ୍ତର ରଥ ପରିବାର ପାଇଁ ଲେଖିଲି । କିଛି ତ୍ରୁଟି ଥିଲେ ଗୁରୁଜନମାନେ କ୍ଷମା ଦେବେ ।




ସମ୍ମାନ ଗ୍ରହଣ



ବିଦ୍ୟାମନ୍ଦିର ପ୍ରତିଷ୍ଠା ପୂଜା



ପାରିବାରିକ ମିଳନ



ପାରିବାରିକ ଉତ୍ସବ ଓ ଉତ୍ସାହ



ରାମ ମନ୍ଦିର ପ୍ରାଙ୍ଗଣରେ



ଅତିଥି ମାନଙ୍କ ଗହଣରେ




ଅଶୋକା ମହୋତ୍ସବରେ



ବିଦ୍ୟାମନ୍ଦିର ପରିଚାଳନା ସଭାରେ



ଅସୁସ୍ଥତା ସତ୍ତ୍ୱେ ବିକାଶ ସମ୍ବନ୍ଧୀୟ ଆଲୋଚନା



ବିଦ୍ୟାମନ୍ଦିର ପ୍ରତିଷ୍ଠା ପୂଜା



ତାଙ୍କ କଣ୍ଠରେ "ଜୀଓ ତୋ ଐସେ ଜୀଓ"



ଭାଇମାନଙ୍କ ସହ



ବିଶୁ ସାର୍ ଅମର ରହେ

ସରସ୍ୱତୀ ବିଦ୍ୟାମନ୍ଦିର, ନିରାକାରପୁର



ବିଶୁ ସାର୍ ଅମର ରହେ

କେ.ବି. ଏକାଡ଼େମୀ, ନିରାକାରପୁର



ଅନ୍ତିମ ଶୟନ



ଗ୍ରାମ ଶ୍ମସାନରେ ମୁଖାଗ୍ନି




ଦଶାହ ଶ୍ରାଦ୍ଧ ସଭା



ତର୍ପଣ (ସରସ୍ୱତୀ ବିଦ୍ୟାମନ୍ଦିର)

